# ଜାତକ କଥା

( ପଞ୍ଚମ ଭାଗ )

ଭାଷାନ୍ତର :

ଶ୍ରୀ ଭଗୀରଥି ନେପାକ

ପ୍ରଥମ ମୁଦ୍ରଣ ୧୯୭୮

ପ୍ରକାଶକ :

ଜେ. ମହାପାତ୍ର ଏଣ୍ଡ କୋ.

ଛାତ୍ରସାଥୀ ଅଫିସ

ନିମଚଉଡ଼ି, କଟକ-୨

ମୂଲ୍ୟ ଟ ୬-୦୦

# ସୂଚୀ






Paper used for the printing of this book was made available by the Govt. of India at the concessional rate.




ଏକଦା ବ୍ରହ୍ମଦତ୍ତ ନାମରେ ଜଣେ ରାଜା ବାରାଣସୀରେ ରାଜୁତି କରୁଥିଲେ ।

ସେ ସମୟରେ ବୋଧିସତ୍ତ୍ୱ ତାଙ୍କର ମନ୍ତ୍ରୀ ଥିଲେ । ସେ ଅତି ବିଶ୍ୱସ୍ତ ଭାବରେ ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ରାଜ୍ୟ ପରିଚାଳନା କ୍ଷେତ୍ରରେ ସେ ରାଜାଙ୍କର ସହାୟତା କରୁଥିଲେ ଓ ବୈଷୟିକ ତଥା ତାତ୍ତ୍ୱିକ କ୍ଷେତ୍ରରେ ସେ ଉପଦେଷ୍ଟା ଭାବରେ କାର୍ଯ୍ୟ କରୁଥିଲେ ।

ରାଜା ବ୍ରହ୍ମଦତ୍ତ ମନ୍ତ୍ରୀ-ବୋଧିସତ୍ତ୍ୱଙ୍କର ପରାମର୍ଶ ମାନି ଚାଲୁଥିଲେ ।

ଥରେ ରାଜା ବ୍ରହ୍ମଦତ୍ତଙ୍କ ରାଜ୍ୟ-ସୀମାନ୍ତରେ ଦଳେ ଲୋକ ବିଦ୍ରୋହ କଲେ । ସୀମାନ୍ତରେ ଅବସ୍ଥାପିତ ସୈନ୍ୟ ଛାଉଣୀରୁ ଏ ସଂପର୍କରେ ରାଜାଙ୍କ ନିକଟକୁ ସମ୍ବାଦ ପ୍ରେରିତ ହେଲା । ଏ ସମ୍ବାଦ ପାଇବା ମାତ୍ରେ ରାଜା ସୈନ୍ୟସାମନ୍ତ ନେଇ ବିଦ୍ରୋହ ଦମନ ନିମନ୍ତେ ସୀମାନ୍ତ ପ୍ରଦେଶକୁ ଯାତ୍ରା ଆରମ୍ଭ କଲେ ।

ସେତେବେଳେ ଘୋର ବର୍ଷାକାଳ । ରାଜଧାନୀର ଅଦୂରବର୍ତ୍ତୀ ଉଦ୍ୟାନରେ ଛାଉଣୀ ପଡିଲା । ସେହି ଉଦ୍ୟାନରେ ସୈନ୍ୟ ସାମନ୍ତ, ଅଶ୍ୱ, ହସ୍ତୀ ଇତ୍ୟାଦିଙ୍କ ପାଇଁ ଭୋଜନର ବ୍ୟବସ୍ଥା ହେଲା ।

ଅଶ୍ୱମାନଙ୍କ ନିମନ୍ତେ ବୁଟ ସିଝା ହୋଇ ଗୋଟିଏ ବଡ ପାତ୍ରରେ ରଖା ହେଲା ।

ଉଦ୍ୟାନ-ବୃକ୍ଷରେ କେତେକ ମର୍କଟ ବାସ କରୁଥିଲେ । ପାତ୍ରରେ ବୁଟ ଦେଖି ବୃକ୍ଷଶାଖାର ଗୋଟିଏ ମର୍କଟ ମନରେ ଲୋଭ ଜାତ ହେଲା । ସେ ବୃକ୍ଷ ଶାଖାରୁ ଓହ୍ଲାଇ ଆସି କିଛି ବୁଟ ନେଇ ପାଟିରେ

ପୂରାଇଲା ଓ ଦୁଇ ହାତରେ ଦୁଇମୁଠା ବୁଟ ଧରି ବୃକ୍ଷ ଉପରକୁ ଚଢ଼ିଗଲା । ବୃକ୍ଷ ଶାଖାରେ ବସି ସେ ବୁଟ ଖାଇବାକୁ ଲାଗିଲା । ଏହିପରି ଖାଉ ଖାଉ ଗୋଟିଏ ବୁଟ ତା' ହାତରୁ ଖସି ତଳେ ପଡ଼ିଗଲା । ସେହି ବୁଟକୁ ନେବ ବୋଲି ତଳକୁ ଡେଇଁ ପଡ଼ିଲା ବେଳକୁ ତା ହାତରେ ଥିବା ସବୁତକ ବୁଟ ତଳେ ବିଂଚି ହୋଇ ପଡ଼ିଲା । ସେ ପ୍ରଥମ ବୁଟକୁ ତ ଖୋଜି ପାଇଲା ନାହିଁ, ତାକୁ ସଂଗ୍ରହ କରିବାକୁ ଯାଇ ହାତରେ ଥିବା ଦୁଇମୁଠା ବୁଟ ହରାଇ ବସିଲା । ଏହାପରେ ମନ ମାରି ସେ ବୃକ୍ଷ ଶାଖାରେ ବସି ରହିଲା ।

ଏ ସମସ୍ତ ଘଟଣା ରାଜା ବ୍ରହ୍ମଦତ୍ତ ତଳେ ବସି ଲକ୍ଷ୍ୟ କରୁଥିଲେ । ମନ୍ତ୍ରୀ ବୋଧିସତ୍ତ୍ୱ ତାଙ୍କ ପାଖରେ ଉପସ୍ଥିତ ଥାନ୍ତି । ସେ ମଧ୍ୟ ମାଙ୍କଡର ସମସ୍ତ ଘଟଣା ପ୍ରତି ଦୃଷ୍ଟି ରଖିଥାନ୍ତି । ରାଜା ବୋଧିସତ୍ତ୍ୱଙ୍କୁ ପ୍ରଶ୍ନକଲେ, ମାଙ୍କଡର କାର୍ଯ୍ୟ ଦେଖି ତୁମର ଧାରଣା କଣ ହେଲା ?

ବୋଧିସତ୍ତ୍ୱ ଉତ୍ତର ଦେଲେ— ମହାରାଜ ! ନିର୍ବୋଧ ଲୋକମାନେ ହିଁ ମର୍କଟ ପରି କାର୍ଯ୍ୟ କରିଥାନ୍ତି । ସେ ଗୋଟିଏ ବୁଟ ପାଇବ ବୋଲି ଦୁଇ ହାତରେ ଧରିଥିବା ଦୁଇମୁଠା ବୁଟ ହରାଇଲା । ନିର୍ବୋଧମାନେ ପଇସାଟିଏ ପାଇବା ପାଇଁ ସହସ୍ରେ ଟଙ୍କାଏ ଖର୍ଚ୍ଚ କରିଥାନ୍ତି । ମୋର ମନେହୁଏ, ଆମ୍ଭେମାନେ ମଧ୍ୟ ନିର୍ବୋଧ ମର୍କଟ ପରି କାର୍ଯ୍ୟ କରିବାକୁ ଯାଉଛୁ । ନ ହେଲେ କି ଏହି ଘୋର ବର୍ଷା କାଳରେ ସୈନ୍ୟ ସାମନ୍ତ ନେଇ ବିଦ୍ରୋହ ଦମନ ନିମନ୍ତେ ସୀମାନ୍ତ ଅଞ୍ଚଳକୁ ଯାତ୍ରା କରନ୍ତେ ?

ବୋଧିସତ୍ତ୍ୱଙ୍କ କଥାର ମର୍ମ ବୁଝି ରାଜା ସୁସଜ୍ଜିତ ସୈନ୍ୟ ସାମନ୍ତ ନେଇ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ବିଦ୍ରୋହୀମାନେ ସ୍ୱୟଂ ରାଜା ବ୍ରହ୍ମଦତ୍ତ ସୈନ୍ୟ ସାମନ୍ତ ନେଇ ସାମନ୍ତଙ୍କୁ ବିଦ୍ରୋହ ଦମନ ନିମନ୍ତେ ଆସୁଥିବା ସମ୍ବାଦ ପାଇ ଭୟରେ ଅଂଚଳ ଛାଡ଼ି ଆତ୍ମଗୋପନ କରିବାକୁ ପଳାୟନ କଲେ ।

ଏହିପରି ବିନା ଯୁଦ୍ଧରେ ବ୍ରହ୍ମଦତ୍ତଙ୍କ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ହୋଇଥିଲା ।

(କଲାୟମୁଟ୍ଠି ଜାତକ)






ବହୁଦିନ ପୂର୍ବେ ରାଜା ବ୍ରହ୍ମଦତ୍ତ ବାରଣସୀରେ ରାଜୁତି କଲା-ବେଳେ, ବୋଧିସତ୍ତ୍ୱ ସମୁଦ୍ର-ଦେବତା ରୂପେ ଜନ୍ମଗ୍ରହଣ କରିଥିଲେ ଓ ସମୁଦ୍ର ଭିତରେ ବାସ କରୁଥିଲେ ।

ବୋଧିସତ୍ତ୍ୱ ଯେଉଁଠି ବାସ କରୁଥିଲେ, ତାର ଅନତି ଦୂରରେ ଅବସ୍ଥିତ ସମୁଦ୍ର ବେଳା-ଭୂମିରେ ଦିନେ ଗୋଟିଏ କାକ ତାର ପତ୍ନୀ ସହିତ ଆସି ଖାଦ୍ୟ ଅନ୍ୱେଷଣ କରୁଥିଲା ।

ଏହାର କିଛି ସମୟ ପୂର୍ବରୁ କେତେକ ଲୋକ ଆସି ସେହି ବେଳାଭୂମିରେ ନାଗପୂଜା କରିଥିଲେ । ସେମାନେ ନାଗ ଦେବତାଙ୍କ ଉଦ୍ଦେଶ୍ୟରେ କ୍ଷୀର, ଚାଉଳ, ମାଛ ମାଂସ ସମେତ କିଛି ମଦ୍ୟ ମଧ୍ୟ ଅର୍ପଣ କରିଥିଲେ । ସେହି ପୂଜା ସାମଗ୍ରୀ ସେତେବେଳ ପର୍ଯ୍ୟନ୍ତ ସେଠି ପଡ଼ି ରହିଥିଲା । କାକ ଦମ୍ପତି ମନ ଆନନ୍ଦରେ ସେହି ପୂଜା ଦ୍ରବ୍ୟ ଖାଇଲେ ଓ ମଦ୍ୟପାନ କଲେ । ମଦ୍ୟ ନିଶାରେ ବିଭୋଳ ହୋଇ ସେମାନେ ଜଳକ୍ରୀଡ଼ା କରିବାକୁ ଉଦ୍ୟତ ହେଲେ । ଠିକ ଏତିକି-ବେଳେ ଗୋଟିଏ ବିଶାଳକାୟ ସାଗର-ଲହଡ଼ା ଆସି କାକୀକୁ ସମୁଦ୍ର ଗର୍ଭକୁ ଟାଣି ନେଲା । ସମୁଦ୍ର ଗର୍ଭରେ ଏକ ବିରାଟ ମତ୍ସ୍ୟ ତାହାକୁ ପାଇ ଗିଳିଦେଲା ।

ଏହାଦେଖି କାକ ତାର ପତ୍ନୀ କଥା ଝାହୁନି ହୋଇ ବିଳାପ କରିବାକୁ ଲାଗିଲା ।

କାକର ବିଳାପ ଶୁଣି ବହୁ ସଂଖ୍ୟକ କାକ ଆସି ଘଟଣା ସ୍ଥଳରେ ଉପସ୍ଥିତ ହେଲେ ଓ କ୍ରନ୍ଦନର କାରଣ ଜାଣିବାକୁ ବ୍ୟଗ୍ରତା ପ୍ରକାଶ କଲେ । ପତ୍ନୀହରା କାକଟି ସମବେତ କାକମାନଙ୍କୁ ତାହାର ପତ୍ନୀ ସମୁଦ୍ର ଗର୍ଭରେ ଲୀନ ହୋଇ ଯାଇଥିବା କଥା ବର୍ଣ୍ଣନା କଲା । ଏହା ଶୁଣି ସମବେତ କାକମାନେ ସହାନୁଭୂତି ପ୍ରଦର୍ଶନ ପୂର୍ବକ

ବିନଷ୍ଟ କାକୀ ଉଦ୍ଦେଶ୍ୟରେ ବିଳାପ କରି ସମୁଦ୍ର ବେଳାକୁ କମ୍ପାଇ ଦେଲେ ।

ଇତ୍ୟବସରରେ ହଠାତ୍ ଏହି କାକମାନଙ୍କ ମନରେ ଏକ ବିଚିତ୍ର ଧାରଣା ଜନ୍ମନେଲା । ସେମାନେ ଭାବିଲେ ଯେ, ସମୁଦ୍ର ଅପେକ୍ଷା ମଧ୍ୟ ସେମାନେ ଅଧିକ ବଳିଷ୍ଠ । ସେମାନେ ଚେଷ୍ଟା କଲେ ସମୁଦାୟ ସମୁଦ୍ରକୁ ଶୁଖାଇ କାକ-ପତ୍ନୀକୁ ତାରି ଗର୍ଭରୁ ଉଦ୍ଧାର କରି ପାରିବେ । ଏଣୁ ଭାବି ସେମାନେ ନିଜ ନିଜର ଥଣ୍ଟରେ ପାଣି ଆଣି କୂଳ ବାଲିରେ ନିକ୍ଷେପ କଲେ ; କିନ୍ତୁ କେତେ କ୍ଷଣ ? କିଛି ସମୟ ପରେ ସମୁଦ୍ରର ଲୁଣି ପାଣିରେ ସେମାନଙ୍କ ଗଳା ପୋଡ଼ିବାକୁ ଲାଗିଲା ଆଖି-ମାନ ରକ୍ତବର୍ଣ୍ଣ ଧାରଣ କଲା, ଦେହ ଅବଶ ହେଲା ; କିନ୍ତୁ ସମୁଦ୍ରର କିଛି ହେଲା ନାହିଁ ।

ଏହା ଦେଖି କେତେକ କାକ କୁହାକୁହି ହେଲେ, ଏପରି ଭାବରେ ସମୁଦ୍ର ଶୁଖାଇ ହେବ ନାହିଁ । କାରଣ ଆମେ ସମୁଦ୍ରର ଗୋଟିଏ ସ୍ଥାନରୁ ଯେତିକି ପାଣି ନେଇ ବାହାରେ ଫିଙ୍ଗି ଦେଉ ଆସୁଛୁ, ମୁହୂର୍ତ୍ତକ ମଧ୍ୟରେ ସେତିକି ପାଣି ପୁଣି ପୂରଣ ହୋଇଯାଉଛି । ଏଣେ ଆମର ଥଣ୍ଟ ଓ ପାଟି କ୍ଳାନ୍ତ ହୋଇ ଗଲାଣି । ଲୁଣି ପାଣିରେ ଗଳା ଫୁଲି ଗଲାଣି । ସମୁଦ୍ରକୁ ଏପରି ଭାବରେ ଶୁଖାଇବା ସମ୍ଭବ ନୁହେଁ ।

ଏହିପରି ଭାବରେ ସମସ୍ତେ ହତାଶ ହୋଇ କାକମାନେ କାକୀର ଗୁଣ ବାହୁନି ବାହୁନି ରୋଦନ କରିବାକୁ ଲାଗିଲେ । ସେମାନେ କହିଲେ, କାକୀର ମୁଖ ଅତ୍ୟନ୍ତ ସୁନ୍ଦର ଥିଲା । ତାର ଥଣ୍ଟ ଓ ଚକ୍ଷୁ ଅତ୍ୟନ୍ତ କମନୀୟ ଥିଲା । ତାର ସ୍ୱର କୋକିଳ ଅପେକ୍ଷା ମଧ୍ୟ ଆହୁରି ମଧୁର ଥିଲା । ଏଇ ସବୁ କାରଣରୁ ସମୁଦ୍ର ତା' ପ୍ରତି ଆକୃଷ୍ଟ ହୋଇ ତାକୁ ଅପହରଣ କରିନେଲା ।

ସମୁଦ୍ର-ଦେବତା ରୂପରେ ଜନ୍ମଗ୍ରହଣ କରିଥିବା ବୋଧିସତ୍ତ୍ୱ କାକମାନଙ୍କର ସମୁଦ୍ରକୁ ଶୁଖାଇ ଦେବାର ଅପଚେଷ୍ଟା ଓ ପରେ ସେମାନଙ୍କର ଅର୍ଥହୀନ ପ୍ରଳାପ ଶୁଣି ଭାବିଲେ—ଏହିପରି ଭାବରେ ଏମାନେ ସମସ୍ତେ ଅତିଶୀଘ୍ର ନିଜର ସର୍ବନାଶର କାରଣ ହେବେ । ସମୁଦ୍ରର ଉତ୍ତାଳ ଲହରୀ ଯେ କୌଣସି ମୁହୂର୍ତ୍ତରେ ମାଡ଼ିଆସି ଏମାନଙ୍କୁ ମୃତ୍ୟୁ ଗର୍ଭରେ ନିକ୍ଷେପ କରିବ । ତେଣୁ କାକମାନଙ୍କର ଜୀବନ-ରକ୍ଷା ଉଦ୍ଦେଶ୍ୟରେ ସେ ସହସା ଏକ ବିଶାଳକାୟ ଅଦ୍ଭୁତ ରୂପ ଧାରଣ କରି କାକମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ ।

ବୋଧିସତ୍ତ୍ୱଙ୍କ ଏହି ବିଶାଳ, ବିକଟାଳ ରୂପ ଦେଖି କାକମାନେ ବିଳାପରୁ ବିରତ ହୋଇ ଭୟରେ ଉଡ଼ି ଚାଲିଗଲେ ।

ଏହିପରି ଭାବରେ ନିର୍ବୋଧ କାକମାନଙ୍କର ଜୀବନ ରକ୍ଷା ସମ୍ଭବ ହେଲା ।

(କାକ ଜାତକ)




ଏକଦା ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ହରିଣ ଜନ୍ମ ଲାଭ କରିଥିଲେ । ସେ ବଣ ମଧ୍ୟରେ ଗୋଟିଏ ଜଳାଶୟ ନିକଟରେ ବସବାସ କରୁଥିଲେ । ଜଳାଶୟ ନିକଟସ୍ଥ ଏକ ବୃକ୍ଷ ଶାଖାରେ କାଠହଣା ପକ୍ଷୀଟିଏ ବାସ କରୁଥିଲା ଏବଂ ଜଳାଶୟ ମଧ୍ୟରେ ଗୋଟିଏ କଚ୍ଛପ ବାସ କରୁଥିଲା । ତିନି ଜଣଯାକ ପରସ୍ପରର ଅତି ନିକଟରେ ବାସବାସ କରୁଥିବାରୁ ଅବଲୀଳାକ୍ରମେ ବନ୍ଧୁତାର ବନ୍ଧନରେ ବାନ୍ଧି ହୋଇ ପଡ଼ିଲେ ଓ ଏକାଠି ମିଳିମିଶି ଆନନ୍ଦରେ କାଳଯାପନ କରିବାକୁ ଲାଗିଲେ ।

ଦିନେ ଜଣେ ଶିକାରୀ ଶିକାର ଉଦ୍ଦେଶ୍ୟରେ ସେହି ବଣରେ ଭ୍ରମଣ କରୁକରୁ ଜଳାଶୟ ନିକଟରେ ହରିଣର ପଦଚିହ୍ନ ଦେଖିବାକୁ ପାଇଲା ଏବଂ ସେଠାରେ ଗୋଟିଏ ଚମଡ଼ାର ଫାଶ ବସାଇ ଘରକୁ ଫେରିଗଲା ।

ସେ ଦିନ ରାତିର ପ୍ରଥମ ପ୍ରହରରେ ବୋଧିସତ୍ତ୍ୱ ପାଣି ପିଇବାକୁ ଜଳାଶୟକୁ ଗଲାବେଳେ, ଶିକାରୀର ଫାଶରେ ପଡ଼ି ଚିତ୍କାର କରିବାକୁ ଲାଗିଲେ । ତାଙ୍କର ଆର୍ତ୍ତ କଣ୍ଠସ୍ୱର ଶୁଣି କାଠହଣା ପକ୍ଷୀଟି ବୃକ୍ଷଶାଖାରୁ ତଳକୁ ଓହ୍ଲାଇ ଆସିଲା ଓ କଚ୍ଛପଟି ଜଳାଶୟ ଭିତରୁ ଚାଲିଆସି ହରିଣ ନିକଟରେ ପ୍ରବେଶ ହେଲା । ତିନି ଜଣଯାକ ମିଶି ଉପସ୍ଥିତ ବିପଦରୁ ଉଦ୍ଧାର ପାଇବା ନିମନ୍ତେ ମନ୍ତ୍ରଣା କରିବାକୁ ଲାଗିଲେ ।

କାଠହଣା ପକ୍ଷୀଟି କଚ୍ଛପକୁ କହିଲା, ବନ୍ଧୁ ! ତୁମେ ତୁମର ତୀକ୍ଷ୍ଣ ଦାନ୍ତ ସାହାଯ୍ୟରେ ଚମଡ଼ା ଫାଶକୁ କାଟି ପକାଅ । ମୁଁ ଶିକାରୀର ଗତି-ବିଧି ପ୍ରତି ଲକ୍ଷ୍ୟ ରଖିଥିବି । ତୁମର କାର୍ଯ୍ୟ ସମାପ୍ତ ହେବା ପୂର୍ବରୁ ସେ ଯେମିତି ବନ୍ଧୁ ହରିଣ ନିକଟରେ ପହୁଞ୍ଚି ନ ଯାଏ ତାର ବ୍ୟବସ୍ଥା କରିବି ।

ଏହା ଶୁଣି କଚ୍ଛପ ହରିଣ ଦେହରେ ବାନ୍ଧି ହୋଇଥିବା ଚମଡା ଫାଶକୁ କାଟିବାକୁ ଲାଗିଲା । କାଠହଣା ପକ୍ଷୀଟି ଶିକାରୀର ବସାଘରେ ଯାଇ ହାଜର ହେଲା ।

ପାହାନ୍ତା ପ୍ରହରରେ ଶିକାରୀ ଗୋଟିଏ ଶାଣ ଦିଆ ଛୁରୀ ଧରି ଜଳାଶୟ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲା ।

କାଠହଣା ପକ୍ଷୀଟି ଘଡିସାର ଶିକାରୀ ଉପରେ ନଜର ରଖିଥାଏ । ଶିକାରୀ ଘରର କବାଟ ଫିଟାଇ ବାହାରିବା ମାତ୍ରକେ, ତାକୁ ନିବର୍ତ୍ତାଇବା ଉଦ୍ଦେଶ୍ୟରେ କାଠହଣା ପକ୍ଷୀଟି ଡେଣା ଫଟଫଟ କରି ଶିକାରୀ ପାଖକୁ ଚାଲି ଆସିଲା ଓ ବିକଟାଳ ଶବ୍ଦ କରି ତା' ମୁଣ୍ଡ ଉପରେ ଘୁମିବାକୁ ଲାଗିଲା ।

ଏହାକୁ ଶିକାରୀଟି ଅଶୁଭ ଚିହ୍ନ ମନେକରି, ଘରକୁ ଫେରି ଆସିଲା ଓ କିଛିକ୍ଷଣ ପରେ ଯାତ୍ରା ଆରମ୍ଭ କରିବ ବୋଲି ସ୍ଥିର କରି ବିଛଣାରେ ଶୋଇ ଶୋଇ ବିଶ୍ରାମ ଗ୍ରହଣ କଲା ।

ଏହା ଦେଖି କାଠହଣା ପକ୍ଷୀଟି ଭାବିଲା, ଆଉ କିଛି ସମୟ ପରେ ଶିକାରୀଟି ଅବଶ୍ୟ ଉଠି ଜଳାଶୟ ଉଦ୍ଦେଶ୍ୟରେ ଯାତ୍ରା କରିବ ; କିନ୍ତୁ ଘରର ସାମନା ଦ୍ୱାରରେ ସେ ଯାତ୍ରା ନ କରି ପଛପଟେ ଥିବା ରାସ୍ତାରେ ଯାତ୍ରାରମ୍ଭ କରିବ । କାରଣ ସେ ସମ୍ମୁଖ ଦ୍ୱାର ଦେଇ ଯାତ୍ରା ଆରମ୍ଭ କଲାବେଳେ ମୁଁ ବିଘ୍ନ ଘଟାଇ ଥିଲି । ତେଣୁ କାଠହଣା ପକ୍ଷୀଟି ଏଥର ଘରର ପଛପଟେ ଥିବା ଦୁଆର ମୁହଁରେ ଜଗି ବସିଲା ।

ସତକୁ ସତ କିଛି ସମୟ ବିଶ୍ରାମ ଗ୍ରହଣ କରିବା ପରେ, ହାତରେ ତୀକ୍ଷ୍ଣ ଛୁରୀ ଖଣ୍ଡିକ ଧରି ଶିକାରୀଟି ଘରର ସାମନା ଦୁଆର ବାଟେ ନ ଯାଇ, ପଛପଟ ରାସ୍ତାରେ ବାହାରିଲା । କାରଣ ସେ ମଧ୍ୟ କାଠହଣା ପକ୍ଷୀ ପରି ମନ ଭିତରେ ଅନୁରୂପ ଯୁକ୍ତି କରିଥିଲା ।

ବର୍ତ୍ତମାନ ଶିକାରୀକୁ ଛୁରୀ–ହସ୍ତରେ ଆଗେଇ ଆସୁଥିବା ଦେଖି କାଠହଣା ପକ୍ଷୀଟି ପୂର୍ବ ଥର ପରି ବିକଟାଳ ରବ ଛାଡ଼ିଲା ଓ ଡେଣା ପିଟି ପିଟି ଶିକାରୀର ମୁଣ୍ଡକୁ ଘୁମିବାକୁ ଲାଗିଲା ।

ଏହାକୁ ଅଶୁଭ ସଙ୍କେତ ବୋଲି ଭାବି ଶିକାରୀଟି ଆଉ ଯାତ୍ରା ଆରମ୍ଭ କଲା ନାହିଁ । ସେ ଚୁପଚାପ ଫେରିଯାଇ ବିଛଣା ଧରିଲା ଓ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଅପେକ୍ଷା କଲା । ସୂର୍ଯ୍ୟୋଦୟ ହେବା ସଙ୍ଗେ ସଙ୍ଗେ ହସ୍ତରେ ଛୁରୀ ନେଇ ସେ ଜଳାଶୟ ଉଦ୍ଦେଶ୍ୟରେ ବାହାରିଲା ।

ଏହା ଦେଖି କାଠହଣା ପକ୍ଷୀଟି ଶୀଘ୍ର ଆକାଶ ମାର୍ଗରେ ଉଡ଼ି ଉଡ଼ି ଯାଇ କଚ୍ଛପ ଓ ହରିଣ ନିକଟରେ ପ୍ରବେଶ ହେଲା ଏବଂ ସେମାନଙ୍କୁ ସତର୍କ କରି ଦେଇ କହିଲା—ସାଧୁ ସାବଧାନ, ଶିକାରୀ ଏଠାକୁ ଚାଲି ଆସିଛି ।

ଏହି ସମୟରେ କଚ୍ଛପ ତାର ସୁତୀକ୍ଷଣ ଦନ୍ତରେ ହରିଣର ଦେହରୁ ସମସ୍ତ ଗଣ୍ଠି କାଟି ଦେଇ ଫିଟାଇ ସାରିଥିଲେ ମଧ୍ୟ, ଆଉ ମାତ୍ର ଗୋଟିଏ ଗଣ୍ଠି ଖୋଲିବାକୁ ବାକି ଥିଲା । ଗଣ୍ଠି କାଟୁ କାଟୁ ତା ପାଟି ବଥାଉ ଥିଲା । ଦାନ୍ତ ସବୁ ଉପୁଡି ପଡିଲା ପରି ଲାଗୁଥିଲା ଓ ମୁହଁ ସାରା ରକ୍ତରେ ବୁଡି ଯାଇଥିଲା । ତଥାପି ବନ୍ଧୁ ହରିଣର ମୁକ୍ତି ପାଇଁ ସେ ଆପ୍ରାଣ ଚେଷ୍ଟା କରୁଥିଲା ।

କାଠହଣା ପକ୍ଷୀ ମୁହଁରୁ ସତର୍କବାଣୀ ଶୁଣିବା ମାତ୍ରେ, ବୋଧିସତ୍ତ୍ୱ ଦେଖିଲେ; ଶିକାରୀଟି ହାତରେ ତୀକ୍ଷ୍ଣ ଛୁରୀ ଧରି ଦାନବ ପରି ମାଡି ଆସୁଛି । ସେ ଦେହର ସବୁ ବଳ ପ୍ରୟୋଗ କଲେ ଓ ଶେଷ ଫାଶକୁ ଛିନ୍ନ କରି ବଣ ଭିତରକୁ ଦୌଡିଗଲେ । କାଠହଣା ପକ୍ଷୀଟି ବୃକ୍ଷଶାଖା ଉପରକୁ ଉଡିଗଲା ; କିନ୍ତୁ କ୍ଲାନ୍ତ କଚ୍ଛପ ଜଳାଶୟ ଭିତରେ ପ୍ରବେଶ କରି ନ ପାରି ଶିକାରୀ ହାତରେ ଧରା ପଡିଗଲା । ଶିକାରୀଟି ତାକୁ ନେଇ ମୁଣା ଭିତରେ ପୂରାଇଲା ।

ବୋଧିସତ୍ତ୍ୱ ଏହା ଦେଖି ଦୁଃଖିତ ହେଲେ । ସେ କଚ୍ଛପକୁ ଯେ କୌଣସି ପ୍ରକାରେ ଉଦ୍ଧାର କରିବାକୁ ସ୍ଥିର କରି ହଠାତ୍ ଶିକାରୀ ପାଖରେ କ୍ଲାନ୍ତ ହୋଇଥିବାର ଛଳନା କରି ଶୋଇ ପଡିଲେ ।

ଏହା ଦେଖି ଶିକାରୀ ମନରେ ହରିଣ ଶିକାର ନିଶା ପୁଣି ଥରେ ଜାଗ୍ରତ ହେଲା । ସେ କଚ୍ଛପ ଥିବା ଥଳିଟାକୁ କାଢି ଭୂଇଁ ଉପରେ ସତର୍କରେ ରଖି ଦେଲା ଓ ଛୁରୀଟିଏ ନେଇ ହରିଣ ପଛରେ ଗୋଡାଇଲା ।

ଶିକାରୀ ନିଜ ପାଖକୁ ମାଡି ଆସୁଥିବା ଦେଖି, ବୋଧିସତ୍ତ୍ୱ ଧଡପଡ ହୋଇ ଉଠିଲେ ଓ ବଣର ଅଭ୍ୟନ୍ତର ପଥରେ ଧାଇଁବାକୁ ଲାଗିଲେ । ଶିକାରୀଟି ହରିଣ ଶିକାର ନିଶାରେ ବୋଧିସତ୍ତ୍ୱଙ୍କର ଅନୁଧାବନ କରୁଥାଏ । ଏହିପରି ବଣ ଭିତରେ ଅନେକ ଦୂର ଗ୍ଭଲି-ଯିବାପରେ, ବୋଧିସତ୍ତ୍ୱ ବାଟ ଭାଙ୍ଗି ବିଜୁଳି ବେଗରେ ଜଳାଶୟ ନିକଟକୁ ଫେରି ଆସିଲେ । ଯେଉଠି ଶିକାରୀଟି ତା ମୁଣା ଛାଡି ଯାଇ ଥିଲା । ମୁଣା ଭିତରେ ବନ୍ଧୁ କଚ୍ଛପ ଥିଲା । ହରିଣଟି ସେହି ମୁଣାକୁ ଏମିତି ଜୋରରେ ଗୋଟିଏ ଲାତ ମାରିଲା ଯେ,ତାହା ଛିନ୍ନଛତରେ ହୋଇ ଟିକିଏ ଦୂରରେ ଯାଇ ପଡିଲା । ଏତଦ୍ୱାରା ମୁଣା ମୁହଁର ଗଣ୍ଠି ଖୋଲି-ଗଲା ଓ କଚ୍ଛପଟି ତା ଭିତରୁ ଅନାୟାସରେ ମୁକ୍ତି ଲାଭ କଲା ।

ଇତି ମଧ୍ୟରେ କାଠହଣା ପକ୍ଷୀଟି ମଧ୍ୟ ବୃକ୍ଷଶାଖାରୁ ଓହ୍ଲାଇ ଆସି ଘଟଣା ସ୍ଥଳରେ ଉପସ୍ଥିତ ହେଲା । ତିନି ବନ୍ଧୁ ପୁଣି ଥରେ ମିଳିତ ହେଲେ ।

ଇତ୍ୟବସରେ ବୋଧିସତ୍ତ୍ୱ, କଚ୍ଛପ ଓ କାଠହଣା ପକ୍ଷୀ ଉଦ୍ଦେଶ୍ୟରେ କହିଲେ—ତୁମେ ଦୁହେଁ ମୋତେ ଶିକାରୀର ଫାଶରୁ ମୁକ୍ତ କରି ବନ୍ଧୁଜନୋଚିତ କର୍ତ୍ତବ୍ୟ ସମ୍ପାଦନ କରିଛ । ତୁମକୁ ମୁଁ

ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ; କିନ୍ତୁ ବର୍ତ୍ତମାନ ଶିକାରୀର ଆସିବା ବେଳ ହୋଇଗଲାଣି । ଏହା ଆନନ୍ଦଦାୟକ କଥୋପକଥନର ସମୟ ନୁହେଁ । ତାପରେ ସେ କାଠହଣା ପକ୍ଷୀ ଉଦ୍ଦେଶ୍ୟରେ କହିଲେ, ତୁମେ ବୃକ୍ଷଶାଖା ଉପରକୁ ଚାଲିଯାଇ ଆତ୍ମଗୋପନ କର ଏବଂ କଇଁଛକୁ କହିଲେ, ତୁମେ ଅତି ଶୀଘ୍ର ଜଳାଶୟ ମଧ୍ୟକୁ ଚାଲିଯାଅ । ଜଳ ମଧ୍ୟରେ ଶିକାରୀ ତୁମର କୌଣସି ଅନିଷ୍ଟ କରିପାରିବ ନାହିଁ । ମୁଁ ମଧ୍ୟ ଘନ ଜଙ୍ଗଲ ମଧ୍ୟକୁ ପଳାୟନ କରି ଆତ୍ମଗୋପନ କରିବି ।

ଏହାପରେ ଶିକାରୀ ଜଣକ ତା'ମୁଣା ରଖିଥିବା ସ୍ଥାନରେ ଉପସ୍ଥିତ ହୋଇ ଦେଖିଲା, ମୁଣା ମଧ୍ୟରେ କଇଁଛ ନାହିଁ ଓ ତ' ମୁଣଟି ବି' ନଷ୍ଟ ହୋଇ ଯାଇଛି । ସେଠାରେ ହରିଣ ଓ କାଠହଣା ପକ୍ଷୀ କେହି ନାହାନ୍ତି । ଏହା ଦେଖି ଶିକାରୀଟି ମନଦୁଃଖରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା ।

ଶିକାରୀର ପ୍ରସ୍ଥାନ ପରେ ତିନି ବନ୍ଧୁ ପୁଣି ଥରେ ନିରାପଦରେ ଏକାଠି ହେଲେ ଓ ଆଜୀବନ ବନ୍ଧୁ ଭାବରେ ମିଳିମିଶି ଓ ପରସ୍ପରକୁ ସାହାଯ୍ୟ କରି ଚଳିବାକୁ ଲାଗିଲେ ।

ମୃତ୍ୟୁପରେ ସେମାନେ ସଦ୍‌ଗତି ଲାଭ କରିଥିଲେ ।

(କୁରଙ୍ଗ ମୃଗ ଜାତକ)






ଏକଦା ବାରଣସୀରେ ରାଜା ବ୍ରହ୍ମଦତ୍ତ ରାଜୁତି କଲାବେଳେ, ବୋଧିସତ୍ତ୍ୱ ଗୋଟିଏ ହସ୍ତୀରୂପ ଜନ୍ମଗ୍ରହଣ କରିଥିଲେ । ସେ ଅତ୍ୟନ୍ତ ସୁନ୍ଦର ଗଢ଼ଣର ଓ ହୃଷ୍ଟପୁଷ୍ଟ ଥିଲେ । କାଳକ୍ରମେ ସେ ହସ୍ତୀମାନଙ୍କର ଯୂଥପତି ହେଲେ । ସେ ଅଶୀ ସହସ୍ର ହସ୍ତୀଙ୍କର ତତ୍ତ୍ୱାବଧାନ କରୁଥିଲେ ଓ ହିମାଳୟ ପର୍ବତର ପାଦଦେଶରେ ବସବାସ କରୁଥିଲେ ।

ବୋଧିସତ୍ତ୍ୱ ତାଙ୍କ ଅନୁଚରମାନଙ୍କ ସଙ୍ଗରେ ଯେଉଁ ସ୍ଥାନରେ ଖାଦ୍ୟ ଅନ୍ୱେଷଣ ନିମନ୍ତେ ବିଚରଣ କରୁଥିଲେ, ଠିକ୍ ସେହି ସ୍ଥାନରେ ଗୋଟିଏ ମାଈ ଚଟିଆ ଡିମ୍ବ ଦେଇଥିଲା । ସେହି ଡିମ୍ବରୁ ଯଥା ସମୟରେ ପକ୍ଷୀଶାବକମାନେ ଜନ୍ମ ନେଲେ । ଏହି ପକ୍ଷୀମାନଙ୍କ ଡେଣାରେ ପର ଲାଗିବା ପୂର୍ବରୁ, ବୋଧିସତ୍ତ୍ୱ ତାଙ୍କର ଅନୁଚରମାନଙ୍କ ସହିତ ଉକ୍ତ ସ୍ଥାନରେ ଉପସ୍ଥିତ ହେଲେ ।

ହସ୍ତୀମାନଙ୍କୁ ଦେଖି ମାଈ ଚଟିଆର ଛାତି ଥରିଉଠିଲା । ସେ ଭାବିଲା, ହସ୍ତୀମାନଙ୍କ ପାଦତଳେ ପଡ଼ି ତାର ସମସ୍ତ ଶାବକ ଧୂଳିସାତ ହୋଇଯିବେ । କାରଣ ଶାବକମାନଙ୍କର ପକ୍ଷରେ ପର ଲାଗି ନାହିଁ । ସେମାନେ ପ୍ରାଣରକ୍ଷା ପାଇଁ ଉଡ଼ି ପଳାଇ ଯାଇ ପାରିବେ ନାହିଁ । ତେଣୁ ସେ ଉପସ୍ଥିତ ପରିସ୍ଥିତିର ପ୍ରତିକାର ଚିନ୍ତା କରି ସ୍ଥିରକଲା ଯୂଥପତିଙ୍କୁ ଗୁହାରି କରିବ । ସେ ଇଚ୍ଛା କଲେ ତାକୁ ସାହାଯ୍ୟ କରି ପାରିବେ ।

ଏହିପରି ବିଚାର କରି, ମାଈ ଚଟିଆଟି ବୋଧିସତ୍ତ୍ୱଙ୍କ ସମ୍ମୁଖରେ ଉପସ୍ଥିତ ହେଲା ଓ ପକ୍ଷ ବିସ୍ତାର ପୂର୍ବକ ବୋଧିସତ୍ତ୍ୱଙ୍କୁ ନମସ୍କାର ଜଣାଇ କହିଲା ହେ ମହାଭାଗ । ଆପଣ ଅଶୀ ସହସ୍ର ହସ୍ତୀଙ୍କର ଦଳପତି ଅଟନ୍ତି । ମୁଁ ଏକ ନଗଣ୍ୟ ପକ୍ଷୀ ମାତ୍ର । ଆପଣ ଦୟା କରି ମୋର ଶାବକମାନଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରନ୍ତୁ ।

ମାଈ ଚଟିଆର ନିବେଦନ ଶୁଣି ବୋଧିସତ୍ତ୍ୱ ଅଭୟ ପ୍ରଦାନ କଲେ ଏବଂ କହିଲେ— ତୁମେ ନିର୍ଭୟ ହୁଅ । ମୁଁ ତୁମର ଶିଶୁସନ୍ତାନ-

ମାନଙ୍କର କୌଣସି ଅନିଷ୍ଟ ସାଧନ କରିବି ନାହିଁ । ମୁଁ ସେମାନଙ୍କୁ ପେଟ ତଳେ ରଖି ଛିଡ଼ା ହେବି । ଅନ୍ୟ ହସ୍ତୀମାନେ ମୋରି ନିର୍ଦ୍ଦେଶରେ ମୋର ପାଖ ଦେଇ ଚାଲିଯିବେ ; କିନ୍ତୁ ହସ୍ତୀଯୂଥର ଶେଷରେ ଥିବା ହସ୍ତୀଟି ନିତାନ୍ତ ଉଦ୍ଧତ । ସେ ମୋର ଆଦେଶ ମାନିବ ନାହିଁ । ଏଣୁ ତାକୁ ଯାଇ ଅନୁନୟ କରି କୁହ ।

ଏହାପରେ ବୋଧିସତ୍ତ୍ୱ ପ୍ରତିଶ୍ରୁତି ମୁତାବକ ପକ୍ଷୀଶାବକମାନଙ୍କୁ ରକ୍ଷା କଲେ । ଅବଶେଷରେ ହସ୍ତୀ ଯୂଥର ଶେଷାଂଶରେ ଥିବା ସେହି ଦୁଷ୍ଟ ହସ୍ତୀଟି ପକ୍ଷୀଶାବକମାନଙ୍କ ନିକଟରେ ଉପସ୍ଥିତ ହେଲା ।

ଦୁଷ୍ଟ ହସ୍ତୀକୁ ଦେଖି ମାଈ ଚଟିଆଟି ପକ୍ଷ ବିସ୍ତାର ପୂର୍ବକ ନମସ୍କାର ଜଣାଇ ପ୍ରାର୍ଥନା କଲା—ହେ ପ୍ରଭୋ ! ଆପଣ ଏ ବଣର ରଜା ଅଟନ୍ତି । ଏ ଅଞ୍ଚଳରେ ଆପଣ ପାଦ ପକାଇ ଆମ୍ଭମାନଙ୍କର ଅଶେଷ ଉପକାର ସାଧନ କରି ଅଛନ୍ତି । ମୁଁ ଗୋଟିଏ ଛାର ହୀନ ପକ୍ଷୀ ଅଟେ । ଆପଣ ଦୟା କରି ମୋର ଶିଶୁଶାବକମାନଙ୍କୁ ରକ୍ଷା କରନ୍ତୁ ।

କିନ୍ତୁ ପକ୍ଷୀର ଅନୁରୋଧ ଶ୍ରବଣ କରି ବିଗଳିତ ହେବା ପରିବର୍ତ୍ତେ ଦୁଷ୍ଟ ହସ୍ତୀ ଗର୍ବରେ ଅନ୍ଧ ହୋଇଗଲା ସେ ତାଚ୍ଛଲ୍ୟଭରା କଣ୍ଠରେ "କଣ କରୁଛି ଦେଖ" ବୋଲି କହି, ପାଦତଳେ ନିମିଷକ ମଧ୍ୟରେ ପକ୍ଷୀ ଶାବକମାନଙ୍କୁ ଚକଟି ପକାଇଲା ଓ ବୀର ଦର୍ପରେ ଚାଲିଗଲା ।

ମାଈ ଚଟିଆଟି ମନ ଦୁଃଖରେ ଗୋଟିଏ ଗଛ ଡାଳରେ ବସି ଅଶ୍ରୁ ମୋଚନ କଲା ଓ ଦୁଷ୍ଟ ହସ୍ତୀ ଉଦ୍ଦେଶ୍ୟରେ କହିଲା—ଦେହର ବଳରେ ବଳୀୟାନ ହୋଇ ତୁ ଏ ପାପ କାମ କଲୁ । ମୁଁ ଛୋଟ ଜୀବ ବୋଲି ମୋତେ ଛୋଟ ମନେକରନା । ମୋର ଦେହରେ ବଳ ନାହିଁ । ସତ; କିନ୍ତୁ ମନରେ ବଳ ଯଥେଷ୍ଟ ରହିଛି । କ୍ଷମତାର ଅପପ୍ରୟୋଗ, କ୍ଷମତାଶାଳୀର କର୍ତ୍ତବ୍ୟ ନୁହେଁ । ଏହା ମୂର୍ଖାମିର ପରିଚୟ ମାତ୍ର । ମୁଁ ଏହାର ପ୍ରତିଶୋଧ ନେବି ।

ଏହା କହି ମାଈ ଚଟିଆଟି ଗୋଟିଏ କାକ ପାଖରେ ଯାଇ ହାଜର ହେଲା । ଇତି ପୂର୍ବରୁ କାକର କୌଣସି ଉପକାର କରିଥିବାରୁ ସେ ମାଈ ଚଟିଆ ଉପରେ ସନ୍ତୁଷ୍ଟ ଥିଲା । ଚଟିଆଟି ସେହି କାକ ଆଗରେ ତାର ସମସ୍ତ ଦୁର୍ଦ୍ଦଶା ବର୍ଣ୍ଣନା କଲା ଓ ସୁଯୋଗ ଲକ୍ଷି ଦୁଷ୍ଟ ହସ୍ତୀର ଚକ୍ଷୁ ଦୁଇଟିକୁ ତାର ସୁତୀକ୍ଷ୍ଣ ଥଣ୍ଟରେ ଆଘାତ କରି ନଷ୍ଟ କରିଦେବାକୁ ପ୍ରବର୍ତ୍ତାଇଲା । କାକଟି ଏଥିରେ ସମ୍ମତ ହେଲା ।

କାକକୁ ନିଜ ପ୍ରସ୍ତାବରେ ସମ୍ମତ କରାଇ ପାରି ମାଈ ଚଟିଆଟି ଗୋଟିଏ ନୀଳ-ମକ୍ଷିକା ପାଖକୁ ଗଲା ।

ନୀଳ-ମକ୍ଷିକା ମାଈ ଚଟିଆକୁ ଦେଖି କହିଲା—ଆପଣ ଅତୀତରେ ମୋର ଅନେକ ଉପକାର କରି ଅଛନ୍ତି । ବର୍ତ୍ତମାନ ଆପଣଙ୍କ ନିମନ୍ତେ କଣ କରିବି କୁହନ୍ତୁ !

ମାଈ ଚଟିଆଟି ଏହା ଶୁଣି କହିଲା—ମୁଁ ଏକମାତ୍ର କାକକୁ ଦୁଷ୍ଟ ହସ୍ତୀର ଚକ୍ଷୁ ଦୁଇଟିକୁ ତାର ସୁତୀକ୍ଷ୍ଣ ଥଣ୍ଟରେ ଆଘାତ କରି ବିନଷ୍ଟ କରି ଦେବାକୁ ଅନୁରୋଧ ଜଣାଇ ଆସିଛି । ସେ ତାହା କରି ସାରିବା ପରେ, ତୁମେ ଦୟାକରି ସେହି ବିନଷ୍ଟ ଚକ୍ଷୁ ଉପରେ ମଳତ୍ୟାଗ କରିବ ।

ନୀଳ—ମକ୍ଷିକା ଏଥିରେ ସଙ୍ଗେ ସଙ୍ଗେ ସମ୍ମତ ହେଲା ।

କାକ ଓ ନୀଳ ମକ୍ଷିକାକୁ ନିଜ ପ୍ରସ୍ତାବରେ ସମ୍ମତ କରାଇ ଦେବା ପରେ ମାଈ ଚଟିଆଟି ଗୋଟିଏ ବେଙ୍ଗ ସମ୍ମୁଖରେ ଉପସ୍ଥିତ ହେଲା । ଏହା ପୂର୍ବରୁ ବେଙ୍ଗଟି ମାଈ ଚଟିଆ ପାଖରୁ ଉପକାର ଲାଭ କରି କୃତଜ୍ଞ ଥିଲା । ବର୍ତ୍ତମାନ ଉପକାରୀ ଚଟିଆକୁ ସମ୍ମୁଖରେ ଦେଖି ପ୍ରଶ୍ନ କଲା—କୁହ, ମୁଁ ତୁମର କିପରି ଭାବରେ ପ୍ରତ୍ୟୁପକାର କରିବି ?

ମାଈ ଚଟିଆଟି ଏହା ଶୁଣି କହିଲା - ଦୁଷ୍ଟ ହସ୍ତୀର ଚକ୍ଷୁ ଦୁଇଟି ସଂପୂର୍ଣ୍ଣ ନଷ୍ଟ ହୋଇ 'ଅନ୍ଧ ହୋଇ ଯିବା ପରେ, ସେ ତୃଷାରେ ଆତୁର ହୋଇ ଯେତେବେଳେ ଜଳର ସନ୍ଧାନ ଆଶାରେ ଘୂରି ବୁଲୁଥିବ, ସେତେବେଳେ ତୁମେ ଦୟାକରି ପର୍ବତର ଶିଖରଦେଶକୁ ଆରୋହଣ କରିବ ଓ ସେଇଠି ବସି ରବ ଛାଡ଼ିବ । ଦୁଷ୍ଟହସ୍ତୀ ପର୍ବତର ଶିଖର–ଦେଶରେ ଜଳ ଅଛି ବୋଲି ପର୍ବତ ଆରୋହଣ କରିବ । ଯେତେବେଳେ ତୁମେ ପର୍ବତର ଶିଖରଦେଶରୁ ପାଦ ଦେଶକୁ ଅବତରଣ କରି ପୁନର୍ବାର ରବ ଛାଡ଼ିବ । ଏତିକି ମାତ୍ର ଅନୁରୋଧ କରୁଛି ।

କୃତଜ୍ଞ ବେଙ୍ଗଟି ମାଈ ଚଟିଆର କଥାରେ ସଙ୍ଗେ ସଙ୍ଗେ ରାଜି ହୋଇଗଲା ।

ଦିନେ ନିର୍ଦ୍ଧାରିତ ଯୋଜନା ଅନୁଯାୟୀ କାକ ଦୁଷ୍ଟ ହସ୍ତୀର ମସ୍ତକ ଉପରେ ଚଢ଼ିଗଲା ଓ ତାର ତୀକ୍ଷ୍ଣ ଥଣ୍ଟଦ୍ୱାରା ହସ୍ତୀର ଦୁଇଟି–ଯାକ ଚକ୍ଷୁ ଖୁମ୍ପି ଖୁମ୍ପି ନଷ୍ଟ କରିଦେଲା । ଏହାପରେ ମକ୍ଷିକାଟି ସେହି ନଷ୍ଟ ଚକ୍ଷୁ ଦୁଇଟି ଉପରେ ବସି ମଳତ୍ୟାଗ କଲା ଓ ତା' ଉପରେ ସଂକ୍ରାମକ ଜୀବାଣୁ ଛାଡ଼ିଦେଲା । ଏହା ଫଳରେ ଚକ୍ଷୁ ଦୁଇଟି ଘା' ହୋଇ ଦୂଷିତ ରକ୍ତ, ପୂଜରେ ଭରିଗଲା । ହସ୍ତୀଟି ଭୀଷଣ କଷ୍ଟ ପାଇ ଏଣେ ତେଣେ ଘୂରି ବୁଲିଲା । ଶୋଷରେ ଆତୁର ହୋଇ ଜଳ ଅନ୍ୱେଷଣ କରୁଥିବା ଦେଖି, ବେଙ୍ଗ ପର୍ବତ ଉପରକୁ ଚଢ଼ିଯାଇ ରବ ଛାଡ଼ିଲା । ତୃଷାତୁର ହସ୍ତୀ ବେଙ୍ଗର ରବ ଶୁଣି ଭାବିଲା, ପର୍ବତ ଉପରେ ବୋଧହୁଏ ଜଳ ଶସ୍ୟ ଅଛି । ଏଣୁ ସେ ଆଗପଛ ନ ବିଚାରି ପର୍ବତ ଆରୋହଣ କଲା । ହସ୍ତୀକୁ ପର୍ବତ ଉପରେ ଦେଖିବା ମାତ୍ରେ, ପୂର୍ବ ଯୋଜନା ଅନୁଯାୟୀ ବେଙ୍ଗଟି ପର୍ବତର ପାଦଦେଶକୁ ଓହ୍ଲାଇ ଆସି ପୁଣି ଥରେ ରବ କଲା । ପର୍ବତ ଉପରେ ଥାଇ ତୃଷାତୁର ହସ୍ତୀଟି ପର୍ବତର ପାଦ ଦେଶରେ ବେଙ୍ଗ ରବ ପୁଣି ବିକଳରେ ଓହ୍ଲାଇ

ଆସିବାକୁ ଚାହିଁଲା ; କିନ୍ତୁ ଅନ୍ଧ ହସ୍ତୀ ବାଟ ନ ପାଇ ଗଡାଣିଆ ରାସ୍ତା ଉପରେ ଭାରସାମ୍ୟ ହରାଇ ବସିଲା ଓ ପର୍ବତର ଶିଖରଦେଶରୁ ତଳକୁ ଗଡ଼ିପଡ଼ିଲା । ଏହିପରି ଭାବରେ ସେହି ଦୁଷ୍ଟ ହସ୍ତୀ ଅବଶେଷରେ ମୃତ୍ୟୁ ବରଣ କଲା ।

ମାଈ ଚଟିଆଟି ହସ୍ତୀର ମୃତ୍ୟୁ ସମ୍ବାଦ ପାଇ ଆନନ୍ଦ ପ୍ରକାଶ କରୁ କରୁ ମୃତ ହସ୍ତୀ ଉଦ୍ଦେଶ୍ୟରେ କହିଲା—ଏବେ ତୋର ବଳ ଦେଖାଉ ଥାଅ । ଯେମିତି କର୍ମ କଲୁ, ସେମିତି ଫଳ ପାଇଲୁ । ଦେଖିଲୁ ତ !

(ଲଟୁକିକ ଜାତକ)






ଏକଦା ବୋଧିସତ୍ତ୍ୱ ଏକ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ଯଥା ସମୟରେ ବିବିଧ ଶାସ୍ତ୍ର ଅଧ୍ୟୟନ କରି ସେ ପାଣ୍ଡିତ୍ୟ ଅର୍ଜନ କଲେ ଓ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କର କୁଳପୁରୋହିତ ପଦରେ ଅଧିଷ୍ଠିତ ହେଲେ । ସେ 'ସର୍ବଜୟ' ନାମରେ ଏକ ମନ୍ତ୍ର ଶିକ୍ଷା କରିଥିଲେ । ଏହି ମନ୍ତ୍ର ବଳରେ ସମଗ୍ର ପୃଥିବୀ ଜୟ କରିବା ସମ୍ଭବ ଥିଲା ।

ଦିନେ ବୋଧିସତ୍ତ୍ୱ ଏହି ମନ୍ତ୍ର ପାଠ କରିବାକୁ ଚାହିଁଲେ ଓ ବିଧି ଅନୁଯାୟୀ ସେ ଏକ ନିର୍ଜନ ସ୍ଥାନକୁ ଯାଇ ପଥର ଆସ୍ଥାନ ଉପରେ ବସିଲେ । ତା'ପରେ ଧ୍ୟାନ ବଳରେ ନିଜ ମନକୁ ବଶୀଭୂତ କରି ନେଇ ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ ।

ଠିକ୍ ସେହି ସ୍ଥାନ ନିକଟରେ ଥିବା ଏକ ଶୃଗାଳ ଗର୍ତ୍ତ ଭିତରେ ଗୋଟିଏ ଶୃଗାଳ ବାସକରୁଥିଲା । ବୋଧିସତ୍ତ୍ୱ ମନ୍ତ୍ର ଉଚ୍ଚାରଣ କଲା-ବେଳେ ଶୃଗାଳଟି ଗର୍ତ୍ତ ମଧ୍ୟରେ ଉପସ୍ଥିତ ଥିଲା ।

ପୂର୍ବ ଜନ୍ମରେ ସେହି ଶୃଗାଳଟି ବ୍ରାହ୍ମଣ ଜନ୍ମଲାଭ କରିଥିଲା ଓ ବୋଧିସତ୍ତ୍ୱ ପାଠକରୁଥିବା ସର୍ବଜୟ ମନ୍ତ୍ର ଶିକ୍ଷା କରିଥିଲା । ବର୍ତ୍ତମାନ ବୋଧିସତ୍ତ୍ୱ ପାଠ କରୁଥିବା ମନ୍ତ୍ର ଶୁଣି ସେ ପୂର୍ବଜନ୍ମର ସ୍ମରଣ ଶକ୍ତି ଫେରି ପାଇଲା ଓ ମନ୍ତ୍ରଟିକୁ ଆୟତ୍ତ କରିନେଲା ।

ବୋଧିସତ୍ତ୍ୱ ମନ୍ତ୍ରପାଠ କରି ସାରିବା ପରେ ମନେ ମନେ ଆନନ୍ଦ ପ୍ରକାଶ କଲେ । କାରଣ ତାଙ୍କର ସନ୍ଦେହ ହେଉଥିଲା ଯେ, ବାରମ୍ବାର ଆବୃତ୍ତି ଅଭ୍ୟାସ ନ ଥିବାରୁ ସେ ହୁଏତ ଆୟତ୍ତ କରିଥିବା ସର୍ବଜୟ ମନ୍ତ୍ରଟି ପାଶୋରି ପକାଇ ଅଛନ୍ତି । ବର୍ତ୍ତମାନ ସେ ସମୁଦାୟ ମନ୍ତ୍ରଟି ନିର୍ଭୁଲ ଭାବରେ ଆମୂଳଚୂଳ ଆବୃତ୍ତି କରି ପାରିଥିବାରୁ ସେ ଅତ୍ୟନ୍ତ ଆନନ୍ଦିତ ହେଲେ ।

ବର୍ତ୍ତମାନ ଗର୍ତ୍ତ ମଧ୍ୟରେ ଉପସ୍ଥିତ ଥିବା ଶୃଗାଳଟି ଗର୍ତ୍ତ ମଧ୍ୟରୁ ଆତ୍ମପ୍ରକାଶ କଲା । ବୋଧିସତ୍ତ୍ୱଙ୍କ ଉଦ୍ଦେଶ୍ୟରେ କହିଲା—ହେ ବ୍ରାହ୍ମଣ ! ମନ୍ତ୍ରଟି ମନେରଖି ପାରିଛ ବୋଲି ଏତେଦୂର ଆନନ୍ଦିତ ହେବାର କୌଣସି କାରଣ ନାହିଁ । କାରଣ ମୁଁ ମଧ୍ୟ ସେ ମନ୍ତ୍ରଟି ଆୟତ୍ତ କରିଛି । ଏହାକହି ସେ ହଠାତ୍ ଧାଇଁବାକୁ ବସିଲା ।

ଏହାଶୁଣି ବୋଧିସତ୍ତ୍ୱ ଭାବିଲେ, 'ସର୍ବଜୟ, ମନ୍ତ୍ରଟି ଅଯୋଗ୍ୟ ଶୃଗାଳ ହାତରେ ପଡ଼ିଛି । ଏହାଦ୍ୱାରା ସେ ପୃଥିବୀର ମଙ୍ଗଳ ପରିବର୍ତ୍ତେ ଅମଙ୍ଗଳ ହିଁ ସାଧନ କରିବ । ଏହା ଭାବି ସେ ଶୃଗାଳକୁ ବଧ କରିବା ନିମନ୍ତେ ତାହାର ପୃଷ୍ଠଧାବନ କଲେ ; କିନ୍ତୁ ଚତୁର ଶୃଗାଳଟି ଏତେ ଚଞ୍ଚଳ ଗତିରେ ଧାଇଁଲା ଯେ, ବୋଧିସତ୍ତ୍ୱ ତାକୁ ପହଞ୍ଚାଇ ପାରିଲେ ନାହିଁ । ଅବଶେଷରେ କ୍ଳାନ୍ତ ହୋଇ ସେ ସ୍ୱ-ବାସ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ଶୃଗାଳ ବଣ ଭିତରେ ପଳାୟନ କରୁ କରୁ ଗୋଟିଏ ଶୃଗାଳୀକୁ ଦେଖି ଛିଡ଼ା ହେଲା । ଦେଖିଲା ଅନ୍ୟ କେହି ତାହାର ଅନୁଧାବନ କରୁ ନାହାନ୍ତି । ସର୍ବଜୟ ମନ୍ତ୍ର ଆୟତ୍ତ କରି ସେ ଗର୍ବରେ ଫୁଲି ଉଠୁଥାଏ । ଗର୍ବୀ ଶୃଗାଳ, ଶୃଗାଳୀ ଆଗରେ ନିଜର ପ୍ରାଧାନ୍ୟ ଦେଖାଇବା ସକାଶେ ତା ଶରୀରରେ ଆଘାତ କଲା । ଏଥିରେ ଶୃଗାଳୀ ବିରକ୍ତ ହୋଇ କହିଲା, ତୁ କିଏ ସେ ? ବିନା କାରଣରେ ମୋ ସାଙ୍ଗରେ ଏପରି କାହିଁକି ଲଗେଇଛୁ ? ଶୃଗାଳ ବେକ ଫୁଲାଇ କହିଲା—ମୁଁ କିଏ ତୁ ଜାଣିନାହୁଁ ? ମୁଁ ସର୍ବଜୟ ମନ୍ତ୍ର ଶିଖିଛି । ଇଚ୍ଛାକଲେ ବଣର ସମସ୍ତ ଜୀବଜନ୍ତୁ ମୋର ଅଧୀନ ହେବେ ।

ଏହା କହି, ନିଜ ଶକ୍ତିର ପରାକାଷ୍ଠା ଦେଖାଇବା ସକାଶେ ସେଇଠି ସର୍ବଜୟ ମନ୍ତ୍ର ଉଚ୍ଚାରଣ କଲା ।

ଗୁହୁଁ ଗୁହୁଁ ବଣର ସିଂହ, ବ୍ୟାଘ୍ର, ଭଲ୍ଲୁକ, ହସ୍ତୀ, ହରିଣ ପ୍ରଭୃତି ସମସ୍ତ ଜୀବଜନ୍ତୁ ଶୃଗାଳ ପାଖରେ ହାଜର ହୋଇଗଲେ । ସେମାନେ ସମସ୍ତେ ଶୃଗାଳର ବଶ୍ୟତା ସ୍ୱୀକାର କରି ତାର ସେବା କରିବାକୁ ପ୍ରସ୍ତୁତ ହେଲେ ।

ବର୍ତ୍ତମାନ ଶୃଗାଳଟି ସର୍ବ ସମକ୍ଷରେ ଘୋଷଣା କଲା ଯେ, ସେ ସେହି ବଣର ରଜା ଅଟେ । ଏହି ଘୋଷଣାକୁ ସମସ୍ତେ ମାନି ନେଲେ ।

ଶୃଗାଳଟି ନିଜକୁ 'ସର୍ବଦନ୍ତ' ନାମରେ ନାମିତ କରି ଗୋଟିଏ ଶୃଗାଳୀକୁ ବିବାହ କଲା ଓ ତାକୁ ରାଣୀର ମର୍ଯ୍ୟାଦା ଦେଲା । ଶୃଗାଳର ଆଦେଶରେ ଦୁଇଟି ହସ୍ତୀ ଉପରେ ଗୋଟିଏ ସିଂହ ଛିଡ଼ା ହେଲା । ସେହି ସିଂହ ଉପରେ ଶୃଗାଳ ଓ ଶୃଗାଳୀ ଉପବେଶନ କରି ଜଙ୍ଗଲ ପରିକ୍ରମା କଲେ ।

ପଥ ମଧ୍ୟରେ ଶୃଗାଳ ସର୍ବଦନ୍ତ ଭାବିଲା, ବର୍ତ୍ତମାନ ମୁଁ ବଣର ସମସ୍ତ ଜୀବଜନ୍ତୁମାନଙ୍କର ରାଜା ହୋଇଛି ; କିନ୍ତୁ ଏଥିରେ ସେତେ ବେଶୀ ବାହାଦୁରୀ ନାହିଁ । ବର୍ତ୍ତମାନ ମଣିଷମାନଙ୍କର ରାଜା ହେବାକୁ ପଡ଼ିବ । ତେବେ ଯାଇ ମୋର ଖ୍ୟାତି ବଢ଼ିବ । ଏହା ବିଚାର କରି, ସେ ବଣର ଲକ୍ଷ ଲକ୍ଷ ପଶୁ ସଙ୍ଗରେ ନେଇ ବାରାଣସୀ ରାଜ୍ୟ ଆକ୍ରମଣ କଲା ।

ବର୍ତ୍ତମାନ ବାରାଣସୀର ପ୍ରଜାମାନେ ନିଜ ରାଜ୍ୟରେ ସିଂହ, ବ୍ୟାଘ୍ର, ଭଲ୍ଲୁକ, ହସ୍ତୀ ପ୍ରଭୃତି ହିଂସ୍ର ଜନ୍ତୁମାନଙ୍କର ସମାବେଶ ଦେଖି ଭୟ ପାଇଗଲେ । ସେମାନେ ଘରୁ ବାହାରକୁ ବାହାରିବା ପାଇଁ ସାହସ କଲେ ନାହିଁ ।

ସର୍ବଦନ୍ତ ଶୃଗାଳ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କ ନିକଟକୁ ଦୂତ ହସ୍ତରେ କହି ପଠାଇଲେ । ମୋତେ ରାଜଗାଦି ଛାଡ଼ି ଦିଅ, ନ ହେଲେ ମୋ ସାଙ୍ଗରେ ଯୁଦ୍ଧ କର ।

ରାଜା ଏ ସମ୍ବାଦ ପାଇ ବିମର୍ଷ ହେଲେ । କଣ କରିବେ ସ୍ଥିର କରି ପାରିଲେ ନାହିଁ ।

ରାଜାଙ୍କ କୁଳପୁରୋହିତ ବୋଧିସତ୍ତ୍ୱ ଏହି ସମୟରେ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଓ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ–ଆପଣ ଅଧୈର୍ଯ୍ୟ ହୁଅନ୍ତୁ ନାହିଁ । ଶୃଗାଳକୁ ରାଜସିଂହାସନ ଅର୍ପଣ କରନ୍ତୁ ନାହିଁ । ଆମେ ଯୁଦ୍ଧ କରି ତାକୁ ଅବଶ୍ୟ ପରାସ୍ତ କରିବା । କାରଣ ସେ ଯେଉଁ କାରଣରୁ ଏତେବଡ଼ ଦୁଃସାହସ କରିବାକୁ ବାହାରିଛି ସେହି କାରଣ ମୋ ପାଖରେ ଅଗୋଚର ନାହିଁ । ମୋ' ଉପରେ ଯୁଦ୍ଧର ସମସ୍ତ ଭାର ଛାଡ଼ିଦେଇ ଆପଣ ନିଶ୍ଚିନ୍ତ ହୁଅନ୍ତୁ ।

ବୋଧିସତ୍ତ୍ୱଙ୍କ ମୁହଁରୁ ଏ ପ୍ରକାର ଆଶ୍ୱାସନା ଶୁଣି ବ୍ରହ୍ମଦତ୍ତ ଓ ବାରାଣସୀର ପ୍ରଜାକୁଳ ଆଶ୍ୱସ୍ତ ହେଲେ । ରାଜା ବ୍ରହ୍ମଦତ୍ତ ମଧ୍ୟ ବୋଧିସତ୍ତ୍ୱଙ୍କ ହସ୍ତରେ ଯୁଦ୍ଧ ଦାୟିତ୍ୱ ଅର୍ପଣ କରିଦେଲେ ।

ଏହାପରେ ବୋଧିସତ୍ତ୍ୱ ଗୋଟିଏ ଉଚ୍ଚ ମଞ୍ଚ ନିର୍ମାଣ କରାଇ ତାରି ଉପରେ ଆରୋହଣ କଲେ, ଓ ସର୍ବଦନ୍ତ ଶୃଗାଳକୁ ପ୍ରଶ୍ନକଲେ— ତୁମକୁ ଆମେ ରାଜ୍ୟ ଛାଡ଼ି ନ ଦେଲେ ତୁମେ କିପରି ଆମର ରାଜ୍ୟ ଅଧିକାର କରିବ ?

ସର୍ବଦନ୍ତ ଛାତି ଫୁଲାଇ କହିଲା— ମୋର ବିରାଟ ସୈନ୍ୟବଳ ଅଛନ୍ତି । ସେମାନଙ୍କ ମଧ୍ୟରୁ କେବଳ ସିଂହମାନଙ୍କ ସାହାଯ୍ୟରେ ମୁଁ ବାରାଣସୀ ନଗରୀ ଦଖଲ କରିବାରେ ସମର୍ଥ ହେବି । ସେମାନଙ୍କୁ କହିଲେ, ସେମାନେ ଏପରି ଉଚ୍ଚ ସ୍ୱରରେ ଗର୍ଜନ କରିବେ ଯେ, ବାରାଣସୀର ନଗରବାସୀମାନେ ସେ ଗର୍ଜନ ଶୁଣି ନଗରୀ ଛାଡ଼ି

ଭୟରେ ପଳାୟନ କରିବେ । ତେଣିକି ବାରାଣସୀର ସିଂହାସନ ଦଖଲ କରିବା ଅତ୍ୟନ୍ତ ସହଜ ହେବ । କାରଣ ବାରାଣସୀ ଛାଡ଼ି ପଳାଉଥିବା ନରନାରୀ ଓ ଗୃହପାଳିତ ପଶୁମାନେ ମୋର ସେନାବାହିନୀ ଦ୍ୱାରା ନିହତ ହେବେ ।

ବୋଧିସତ୍ତ୍ୱ ସର୍ବଦନ୍ତ-ଶୃଗାଳର କୌଶଳ ଶୁଣି ମଞ୍ଚ ଉପରୁ ତଳକୁ ଓହ୍ଲାଇ ଆସିଲେ ଓ ଘୋଷଣା କଲେ ଯେ, ବାରାଣସୀର ନରନାରୀମାନେ ମହମଦ୍ୱାରା ନିଜ ନିଜ କାନକୁ ବନ୍ଦ କରି ନିଅନ୍ତୁ । ବାରାଣସୀର ନରନାରୀମାନେ ସେହି ଆଦେଶ ସହର୍ଷ ପାଳନ କଲେ । ଖାଲି ସେତିକି ନୁହେଁ, ବାରାଣସୀର ଗୃହପାଳିତ ପଶୁମାନଙ୍କର କର୍ଣ୍ଣପଥ ମଧ୍ୟ ବନ୍ଦ କରି ଦେବାର ବ୍ୟବସ୍ଥା କରାଗଲା ।

ଏହାପରେ ବୋଧିସତ୍ତ୍ୱ ପୁନର୍ବାର ମଞ୍ଚ ଉପରକୁ ଉଠିଗଲେ ଏବଂ କହିଲେ—ତୁମ ଆଦେଶରେ ସିଂହ ପରି ବଳୁଆ ପଶୁମାନେ ଗର୍ଜନ କରିବେ କାହିଁକି ? ସେମାନେ ବନର ଶ୍ରେଷ୍ଠ ଜୀବ ଅଟନ୍ତି । ତୁମ ପରି ବୃଦ୍ଧ ଶୃଗାଳକୁ ସେମାନେ ବା ମାନିବେ କାହିଁକି ?

ସର୍ବଦନ୍ତ ଗର୍ବରେ ଫୁଲିଉଠି ଗମ୍ଭୀର କଣ୍ଠରେ ଉତ୍ତର ଦେଲା—ତୁମେ ମୋର ଶକ୍ତି ବିଷୟ ଜାଣି ନଥିବାରୁ ଏପରି କହୁଛ । ତୁମେ କଣ ଦେଖୁନାହଁ ଯେ, ମୁଁ ଏବଂ ମୋର ରାଣୀ ହସ୍ତୀ ଉପରେ ବସିଥିବା ସିଂହ ପିଠିରେ ଉପବେଶନ କରିଅଛୁ ? ତାକୁ ଆଦେଶ ଦେଲେ ସେ ସଙ୍ଗେ ସଙ୍ଗେ ଭୀଷଣ ଗର୍ଜନ କରିବ । ଏହାପରେ ସେ ନିଜ କ୍ଷମତାର ପରୀକ୍ଷା ଦେଖାଇବାର ଉଦ୍ଦେଶ୍ୟରେ ସିଂହ ପିଠିରେ ଲାତମାରି ତାକୁ ଗର୍ଜନ କରିବାକୁ ଆଦେଶ ଦେଲା ।

ସିଂହ ହସ୍ତୀମାନଙ୍କ ଉପରେ ଛିଡ଼ା ହୋଇ ତିନି ଥର ଗର୍ଜନ କଲା କିନ୍ତୁ ଏ ଗର୍ଜନ ବାରାଣସୀର ନରନାରୀ ଅଥବା ଗୃହପାଳିତ ପଶୁମାନଙ୍କ କାନରେ ପଡ଼ିଲା ନାହିଁ । ତେଣୁ ବାରାଣସୀରେ କୌଣସି ଚାଞ୍ଚଲ୍ୟ ଦେଖାଗଲା ନାହିଁ ; କିନ୍ତୁ ଏହାରି ଫଳରେ ହସ୍ତୀ ଦ୍ୱୟ ଭୀଷଣ ଭୟପାଇ ପଳାୟନ କଲେ ।

ସିଂହ ଓ ସିଂହ ଉପରେ ଉପବେଶନ କରିଥିବା ସର୍ବଦନ୍ତ ରାଜା ଓ ତାର ରାଣୀ ଭୂଇଁ ଉପରେ କଚାଡ଼ି ହୋଇ ପଡ଼ିଲେ ।

ହସ୍ତୀମାନଙ୍କ ପଦ ଘାତରେ ରାଜା ଓ ରାଣୀଙ୍କର ଘଟଣାସ୍ଥଳରେ ମୃତ୍ୟୁ ଘଟିଲା ।

କେବଳ ସେତିକି ନୁହେଁ, ସିଂହର ଭୀଷଣ ଗର୍ଜନ ଫଳରେ ସମବେତ ବନ୍ୟ ପଶୁମାନେ ଇତସ୍ତତଃ ହେଲେ । ସେମାନେ ଏଣେ ତେଣେ ଦଉଡ଼ି ପଳାଇ ଗଲାବେଳେ ହସ୍ତୀମାନଙ୍କ ପଦାଘାତରେ ପ୍ରାଣ ତ୍ୟାଗ କଲେ । ଏହିପରି ଭାବରେ ଲକ୍ଷ ଲକ୍ଷ ପଶୁ ନିଧନ ହେଲେ ।

ଏହାପରେ ବୋଧିସତ୍ତ୍ୱଙ୍କ ନିର୍ଦ୍ଦେଶକ୍ରମେ ବାରାଣସୀର ନର-ନାରୀମାନେ ସେମାନଙ୍କ କାନମୂଳରୁ ମହଣ କାଢ଼ିନେଲେ ଓ ରଣା-ଙ୍ଗନକୁ ଆସି ଦେଖିଲେ, ଅନେକ ବନ୍ୟ ପଶୁ ଆପେ ଆପେ ମରି ପଡ଼ି ଅଛନ୍ତି । ହରିଣ, ଶଶକ, ଇତ୍ୟାଦି ବନ୍ୟ ପଶୁମାନେ ବାରାଣସୀର ନରନାରୀମାନଙ୍କର ଆଧାର ହେଲେ ।

ସର୍ବଦନ୍ତ ଶୃଗାଳ ପରି ଅପାତ୍ର ହାତରେ 'ସର୍ବଜୟ' ମନ୍ତ୍ର ପରି ମୂଲ୍ୟବାନ୍ କ୍ଷମତା ଥିବାରୁ ଏ ପ୍ରକାର ବିଷମୟ ପରିଣତି ଘଟିଥିଲା ।

(ସର୍ବଦନ୍ତ ଜାତକ)






ରାଜା ବ୍ରହ୍ମଦତ୍ତ ବାରଣସୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ଗୋଟିଏ ମୂଷିକ ରୂପେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଅତ୍ୟନ୍ତ ବିଚକ୍ଷଣ ବୁଦ୍ଧି ଥିଲା । ସେ ଆକାରରେ ମୂଷିକମାନଙ୍କଠାରୁ ଯଥେଷ୍ଟ ବଡ ଥିଲେ । ସେ ଶତାଧିକ ଅନୁଚରମାନଙ୍କ ସହିତ ବଣରେ ବାସ କରୁଥିଲେ । ତାଙ୍କ ଦଳର ସହସ୍ର ସହସ୍ର ମୂଷିକ ବୋଧିସତ୍ତ୍ୱଙ୍କୁ ଦଳର ରାଜା ଭାବରେ ଗ୍ରହଣ କରିଥିଲେ ଓ ତାଙ୍କର ଆଦେଶ ମାନି ଚଳୁଥିଲେ ।

ସେହି ବଣରେ ଗୋଟିଏ ଧୂର୍ତ୍ତ ଶୃଗାଳ ବାସ କରୁଥିଲା । ସେ ବୋଧିସତ୍ତ୍ୱଙ୍କ ସଙ୍ଗେ ବାସ କରୁଥିବା ମୂଷିକମାନଙ୍କୁ ଦେଖି ସେମାନଙ୍କୁ ଖାଇବା ପାଇଁ ମନ ବଳାଇଲା । କିନ୍ତୁ ସହସ୍ରାଧିକ ମୂଷିକମାନଙ୍କୁ ଆକ୍ରମଣ କରି ବଳ ପ୍ରୟୋଗଦ୍ୱାରା ସେମାନଙ୍କୁ ଅପହରଣ କରି-ନେବାକୁ ତାର ସାହସ ହେଲା ନାହିଁ । ତେଣୁ ସେ ଏକ ଅଭିନବ ଉପାୟ ସ୍ଥିର କଲା ।

ଧୂର୍ତ୍ତ ଶୃଗାଳ ମୂଷିକମାନଙ୍କ ବାସସ୍ଥାନ ନିକଟରେ ଗୋଟିଏ ପାଦରେ ଛିଡାହୋଇ ସୂର୍ଯ୍ୟଙ୍କୁ ଚାହିଁ ରହିଥିବାର ଛଳନା କଲା ଓ ମୁହଁ ଖୋଲା ରଖି ପବନ ପିଉଥିବାର ଛଳନା କଲା ।

ବୋଧିସତ୍ତ୍ୱ ସେଦିନ ନିଜର ଅନୁଚରମାନଙ୍କ ସଙ୍ଗରେ ଖାଦ୍ୟ ଅନ୍ୱେଷଣରେ ବାହାରିଲା ବେଳେ ସେହି ଧୂର୍ତ୍ତ ଶୃଗାଳକୁ ଗୋଟିଏ ପାଦରେ ଛିଡା ହୋଇ ସୂର୍ଯ୍ୟ ନମସ୍କାର କରୁଥିବା ଭଙ୍ଗୀରେ ଦେଖିଲେ । ତେଣୁ ସେ ମନେ ମନେ ଭାବିଲେ, ଏହି ଶୃଗାଳଟି ନିଶ୍ଚୟ ଏକ ଧାର୍ମିକ ପ୍ରାଣୀ ହୋଇଥିବ । ନହେଲେ ନୀରବରେ ଏକ ପାଦରେ ଛିଡା ହୋଇ ସୂର୍ଯ୍ୟ ନମସ୍କାର କରନ୍ତା କାହିଁକି ? ତା ଛଡା ଅନ୍ୟ ଶୃଗାଳମାନେ କେବେହେଲେ ଏପରି କରନ୍ତି ନାହିଁ ।

ତେଣୁ ବୋଧିସତ୍ତ୍ୱ ଶୃଗାଳ ନିକଟକୁ ଯାଇ ପ୍ରଶ୍ନକଲେ, ତୁମ ନାଁ କଣ ?

ଧୂର୍ତ୍ତ ଶୃଗାଳଟି ଉତ୍ତର ଦେଲା, ଈଶ୍ୱର ଭକ୍ତ ।'

ତୁମେ ଗୋଟିଏ ପାଦରେ ଛିଡ଼ା ହୋଇଛ କାହିଁକି ? ବୋଧିସତ୍ତ୍ୱ ପ୍ରଶ୍ନ କଲେ ।

ମୁଁ ଚାରୋଟିଯାକ ପାଦରେ ଛିଡ଼ା ହେଲେ, ପୃଥିବୀକୁ କଷ୍ଟ ହୋଇପାରେ । ଏହା ଭାବି ଗୋଟିଏ ମାତ୍ର ପାଦରେ ଛିଡ଼ା ହୋଇଛି । ଶୃଗାଳ ଉତ୍ତର ଦେଲା ।

ତୁମେ ପାଟି ଖୋଲା କରି ଛିଡ଼ାହେବାର କାରଣ କଣ ? ବୋଧିସତ୍ତ୍ୱ ପୁଣି ପ୍ରଶ୍ନକଲେ ।

ମୁଁ ପବନ ଆହାର କରି ଜୀବନଧାରଣ କରିଅଛି । ପବନ ବ୍ୟତୀତ ଅନ୍ୟ କିଛି ଭକ୍ଷଣ କରୁନାହିଁ । ତେଣୁ ପାଟି ଖୋଲି ଛିଡ଼ା ହୋଇଛି । ଶୃଗାଳ ବିନମ୍ର ପ୍ରକାରେ ଉତ୍ତର ଦେଲା ।

ପୁଣି ତୁମେ ସୂର୍ଯ୍ୟଙ୍କୁ ଚାହିଁ ରହିଛ କାହିଁକି ? ବୋଧିସତ୍ତ୍ୱ ଶେଷ ପ୍ରଶ୍ନ କଲେ ।

ମୁଁ ଜଣେ ସୂର୍ଯ୍ୟ ଉପାସକ ଅଟେ । ଶୃଗାଳ ଉତ୍ତର ଦେଲା ।

ଏହା ଶୁଣି ବୋଧିସତ୍ତ୍ୱ ଭାବିଲେ, ସେହି ଶୃଗାଳଟି ନିଶ୍ଚୟ ଅତି ଧାର୍ମିକ । ନ ହେଲେ ସେ ପ୍ରକାର ଆଚରଣ କରନ୍ତା ନାହିଁ । ଏହିପରି ବିଚାର କରି ବୋଧିସତ୍ତ୍ୱ ପ୍ରତିଦିନ ସକାଳେ ଓ ସଂଧ୍ୟାବେଳେ ନିଜ ଅନୁଚରମାନଙ୍କ ସଙ୍ଗରେ ସେହି ତଥାକଥିତ ଧାର୍ମିକ ଶୃଗାଳକୁ ଭକ୍ତି ନିବେଦନ କରିବାକୁ ଆସିଲେ ।

ଶୃଗାଳ ଏହାକୁ ସୁବର୍ଣ୍ଣ ସୁଯୋଗ ମନେ କରି, ଧାଡ଼ିର ସର୍ବଶେଷ ମୂଷିକକୁ ଧରି ନେଉଥିଲା ଓ ତାକୁ ତତ୍‌କ୍ଷଣାତ୍ ଗିଳି ପକାଇ ଓଠ ଚାଟି ବିଜ୍ଞ ତପସ୍ୱୀ ପରି ଚାହିଁ ରହୁଥିଲା । ଏହିପରି ଭାବରେ ଧୂର୍ତ୍ତ ଶୃଗାଳଟି ତାର ମୂଷିକ ଭକ୍ଷଣ ତୃଷ୍ଣା ଚରିତାର୍ଥ କରୁଥିଲା ।

କାଳକ୍ରମେ ମୂଷିକମାନଙ୍କ ସଂଖ୍ୟା ହ୍ରାସ ହେଲା । ଏ କଥା ଅବଶିଷ୍ଟ ମୂଷିକମାନେ ଉପଲବ୍ଧି କରି ବୋଧିସତ୍ତ୍ୱଙ୍କୁ ଏହାର କାରଣ ପଚାରିଲେ । ପ୍ରଥମେ ବୋଧିସତ୍ତ୍ୱ ଏ ସଂପର୍କରେ କୌଣସି କଥା ସ୍ଥିର କରିପାରିଲେ ନାହିଁ । ପରେ କିନ୍ତୁ ଶୃଗାଳ ଉପରେ ତାଙ୍କ ସନ୍ଦେହ ଘନୀଭୂତ ହେଲା । ତେଣୁ ସେ ନିଜେ ସମସ୍ତ ବିଷୟ ପରୀକ୍ଷା କରିବାକୁ ସ୍ଥିର କଲେ ।

ପରଦିନ ଶୃଗାଳକୁ ଭକ୍ତି ନିବେଦନ କରି ବାହାରିଲା ବେଳେ, ବୋଧିସତ୍ତ୍ୱ ସବୁ ଦିନ ପରି ଧାଡ଼ିର ପ୍ରଥମେ ନ ଚାଲି ସର୍ବଶେଷରେ ଚାଲିଲେ । ଫେରିଲା ବେଳେ ଧୂର୍ତ୍ତ ଶୃଗାଳଟି ସବୁଥର ପରି ଧାଡ଼ିର ସର୍ବାଶେଷରେ ଥିବା ବୋଧିସତ୍ତ୍ୱଙ୍କ ଉପରେ ଅଚାନକ ଆକ୍ରମଣ କରି ତାଙ୍କୁ ଗଳାଧଃକରଣ କରିବାକୁ ଚାହିଁଲା ।

କିନ୍ତୁ ବୋଧିସତ୍ତ୍ୱ ପୂର୍ବରୁ ସତର୍କ ଥିଲେ । ତେଣୁ ଧୂର୍ତ୍ତ ଶୃଗାଳଟି ତାଙ୍କର କୌଣସି ଅନିଷ୍ଟ କରିପାରିଲା ନାହିଁ । ବୋଧିସତ୍ତ୍ୱ ସହସା ଶୃଗାଳର ଗଳା ଉପରକୁ ଚଢ଼ିଗଲେ ଓ ତାଙ୍କର ତୀକ୍ଷ୍ଣ ଦନ୍ତ ସାହାଯ୍ୟରେ ଗଳାକୁ ଫୋଡ଼ି ପକାଇଲେ । ଧୂର୍ତ୍ତ ଶୃଗାଳର ବେକରୁ ପିଚକାରୀ ପରି ରକ୍ତର ଧାର ଛୁଟିଲା । ଠିକ୍ ଏତିକିବେଳେ ବୋଧିସତ୍ତ୍ୱଙ୍କ ସଙ୍ଗରେ ଥିବା ଅସଂଖ୍ୟ ମୂଷିକ ଶୃଗାଳ ଉପରକୁ ଚଢ଼ିଯାଇ ତାର ସର୍ବାଙ୍ଗକୁ ଟିକିଟିକି କରି କାଟି ପକାଇଲେ ।

ଧୂର୍ତ୍ତ ଶୃଗାଳର ଏହିପରି ଭାବରେ ମୃତ୍ୟୁ ହେଲା ।

ଏହା ପରେ ମୂଷିକ କୁଳ ଆନନ୍ଦ ସହକାରେ ଅରଣ୍ୟରେ ବସବାସ କରିବାକୁ ଲାଗିଲେ ।

(ବିଲାର ଜାତକ)






ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ଏକ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ବୟଃପ୍ରାପ୍ତି ହେବା ପରେ ସେ ତକ୍ଷଶିଳା ଯାଇ ଜଣେ ପ୍ରସିଦ୍ଧ ଗୁରୁଙ୍କ ନିକଟରେ ବେଦ ଓ ଶାସ୍ତ୍ର ଶିକ୍ଷା କଲେ । ଏହା ସଙ୍ଗେ ସଙ୍ଗେ ସେ ଧନୁର୍ବିଦ୍ୟାରେ ମଧ୍ୟ ପାରଦର୍ଶିତା ଲାଭ କଲେ ।

ବିଦ୍ୟାଶିକ୍ଷା ସମାପ୍ତ ହେବା ପରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବା ଉଦ୍ଦେଶ୍ୟରେ ସେ ନିଜ ଦେଶକୁ ଆସିଲେ ।

ଏହି ଜନ୍ମରେ ବୋଧିସତ୍ତ୍ୱ ବାମନ ଓ କୁଜା ଥିଲେ । ସେ ଭାବିଲେ, ଜୀବିକା ଅର୍ଜନ ପାଇଁ ରାଜାଙ୍କ ପାଖକୁ ଗଲେ, ତାଙ୍କ ଶାରୀରିକ ଆକୃତି ଦେଖି ରାଜା ତାଙ୍କୁ ବିଶ୍ୱାସ କରିବେ ନାହିଁ । ତେଣୁ ଜୀବିକା ମିଳିବା ଅସମ୍ଭବ ହେବ । ଏଣୁ ସେ ଜଣେ ହୃଷ୍ଟପୁଷ୍ଟ ସୁନ୍ଦର ଲୋକର ସନ୍ଧାନ ନେବାକୁ ବାହାରିଲେ । ତାଙ୍କର ଧାରଣା ହେଲା, ସେହି ହୃଷ୍ଟପୁଷ୍ଟ ସୁନ୍ଦର ଲୋକକୁ ଆଶ୍ରୟ କରି ସେ ନିଜର ଯୋଗ୍ୟତାକୁ ଉପଯୋଗ କରିବେ ଓ ଉଭୟେ ଆନନ୍ଦରେ ଚଳିଯିବେ ।

ଏହା ବିଚାର କରି ସେ ଜଣେ ହୃଷ୍ଟପୁଷ୍ଟ ସୁନ୍ଦର ଲୋକ ଖୋଜି ଖୋଜି ଗୋଟିଏ ତନ୍ତୀ ସାହିରେ ପହଞ୍ଚିଲେ । ଯେଉଁଠି ଭୀମସେନ ନାମରେ ଜଣେ ବଳିଷ୍ଠକାୟ ତଥା ସୁନ୍ଦର ଲୋକ ବାସ କରୁଥିଲା । ସେ ତାକୁ ଡାକି କହିଲେ, ''ଦେଖ, ତୁମର ରୂପ ଓ ସ୍ୱାସ୍ଥ୍ୟ ଦେଖିଲେ ତୁମକୁ ଏକ ବୀରପୁରୁଷ ବୋଲି ସମସ୍ତେ ମନେ କରିବେ । ତୁମେ ଲୁଗା ବୁଣି ବହୁତ କଷ୍ଟରେ ଚଳୁଛ । ମୋ' ସଙ୍ଗରେ ରାଜାଙ୍କ ପାଖକୁ ଚାଲ । ତୁମେ ନିଜକୁ ବୀର ଓ ଯୋଦ୍ଧା ବୋଲି ପରିଚୟ ଦେବ । ରାଜା ତୁମକୁ ଦେଖି, ତୁମ କଥାରେ ବିଶ୍ୱାସ କରିବେ । ସେ ତୁମକୁ ନିଯୁକ୍ତି ଦେବେ । ଏହା ପରେ ମୁଁ ତୁମ ସଙ୍ଗେ ସଙ୍ଗେ ରହି ସାହାଯ୍ୟ କରିବି । ଆମେ ଉଭୟେ ଆନନ୍ଦରେ ଚଳିବା । ମୁଁ ଧନୁର୍ବିଦ୍ୟାରେ ପାରଙ୍ଗମ । ମୋ ପରାମର୍ଶ ଅନୁଯାୟୀ କାମ କଲେ କୌଣସି ଅସୁବିଧା ହେବ ନାହିଁ ।''

ବୋଧିସତ୍ତ୍ୱଙ୍କ କଥାରେ ରାଜି ହୋଇ ଭୀମସେନ ତାଙ୍କ ସଙ୍ଗରେ ବାରାଣସୀ ଗଲା । ସେ ଆଗରେ ଆଗରେ ଚାଲୁଥିଲା ଓ ବୋଧିସତ୍ତ୍ୱ ତା'ର ଚାକର ରୂପରେ ଧନୁଶର ଧରି ପଛରେ ପଛରେ ଚାଲିଥିଲେ । ସେମାନେ ନଅରରେ ପହୁଞ୍ଚି ଦରବାରୀ ହାତରେ ରାଜାଙ୍କ ସଙ୍ଗରେ ସାକ୍ଷାତ କରିବାପାଇଁ ପ୍ରାର୍ଥନା ଜଣାଇଲେ ।

ରାଜା ଭୀମସେନକୁ ଆଗମନର ଉଦ୍ଦେଶ୍ୟ ପଚାରିଲେ ଓ ଭୀମସେନ ବୋଧିସତ୍ତ୍ୱଙ୍କ ଉପଦେଶ ମୁତାବକ କହିଲା, "ମହାଭାଗ ! ମୁଁ ଜଣେ ଧନୁର୍ଦ୍ଧର ବୀର । ସମଗ୍ର ଦେଶରେ ମୋ ପରି ବୀର ନାହାନ୍ତି। ମୁଁ ଆପଣଙ୍କ ଅଧୀନରେ କାର୍ଯ୍ୟ କରିବାକୁ ଇଚ୍ଛା କରେ ।"

"କେତେ ବେତନ ନେବ ?" ରାଜା ପ୍ରଶ୍ନ କଲେ ।

"ପାକ୍ଷିକ ହଜାରେ ମୁଦ୍ରା ମାତ୍ର ।" ଭୀମସେନ ଉତ୍ତର ଦେଲା ।

ରାଜା ତାର ହୃଷ୍ଟପୁଷ୍ଟ ଶରୀର ଦେଖି ତା' କଥା ଉପରେ ବିଶ୍ୱାସ କରିଗଲେ । କହିଲେ, "ମୁଁ ତୁମକୁ ନିଯୁକ୍ତି ଦେଲି ।"

ଏହା ପରେ ରାଜା ଭୀମସେନ ସଙ୍ଗରେ ଥିବା ସେହି ଖର୍ବକାୟ ବ୍ୟକ୍ତିର ପରିଚୟ ମାଗିଲେ ।

ଭୀମସେନ ବୋଧିସତ୍ତ୍ୱଙ୍କ କହିବା ଅନୁଯାୟୀ ତାଙ୍କୁ ନିଜର ଚାକର ବୋଲି ପରିଚୟ ଦେଲା । ରାଜା ବୋଧିସତ୍ତ୍ୱଙ୍କୁ ଭୀମସେନ ସଙ୍ଗରେ ରହିବାକୁ ଅନୁମତି ଦେଲେ ।

ଏହାପରେ ବୋଧିସତ୍ତ୍ୱ ଭୀମସେନ ପାଖରେ ରହି ତାକୁ ସମସ୍ତ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ।

ଏହି ସମୟରେ ବାରାଣସୀ ନିକଟସ୍ଥ ବଣରେ ବ୍ୟାଘ୍ର ଉପଦ୍ରବ ଦେଖାଦେଲା । ତା'ଦ୍ୱାରା ଅନେକ ଲୋକ ନିହତ ହେଲେ । ଜନସାଧାରଣ ନିରାପଦରେ ରାସ୍ତାଘାଟରେ ଯିବାଆସିବା କରିପାରିଲେ ନାହିଁ ।

ରାଜା ଭୀମସେନକୁ ଡକାଇ ସେହି ବାଘକୁ ଆୟତ୍ତ କରିପାରିବ କି ନାହିଁ ବୋଲି ପ୍ରଶ୍ନକଲେ । ।

ଏହା ଶୁଣି ଭୀମସେନ ସେହି ବାଘକୁ ବାନ୍ଧି ଆଣିବା ପାଇଁ ପ୍ରତିଶ୍ରୁତି ଦେଲା ।

ଭୀମସେନ ସ୍ୱବାସଗୃହକୁ ଫେରିଆସି ବୋଧିସତ୍ତ୍ୱଙ୍କୁ ରାଜାଙ୍କର ଆଦେଶ କଥା କହିଲା ଓ ବୋଧିସତ୍ତ୍ୱଙ୍କୁ ତା' ସଙ୍ଗରେ ବଣକୁ ଯିବାକୁ ଅନୁରୋଧ କଲା ।

କିନ୍ତୁ ବୋଧିସତ୍ତ୍ୱ ଭୀମସେନ ସଙ୍ଗରେ ବଣକୁ ନ ଯାଇ ତାକୁ ସେହି ବାଘ ମାରିବାର କୌଶଳ ବତାଇଦେଲେ । କହିଲେ, ତୁମେ ଏକାକୀ ବଣକୁ ଯାଅ, କିନ୍ତୁ ଏକାକୀ ବାଘ ପାଖକୁ ଯିବ ନାହିଁ । ସେଠାକାର ପ୍ରଜାମାନଙ୍କୁ କହିବ, ରାଜାଙ୍କର ଆଦେଶ ଅଛି, ଦୁଇହଜାର ଧନୁଶର ନେଇ ଦୁଷ୍ଟ ବାଘକୁ ଖୁନ୍ଦୁଡାଅ । ସେମାନେ କୋଳାହଳ କରି ବାଘ ଗୁମ୍ଫାକୁ ଘେରିଗଲେ, ବାଘ ନିଜ ସ୍ଥାନରୁ ବାହାରି ଆସିବ । ସେତେବେଳେ ବଣର ଏକ ନିରାପଦ ସ୍ଥାନରେ ତୁମେ ଶୋଇଯିବ । ଘେରି ରହିଥିବା ଗ୍ରାମବାସୀମାନେ ତୀର ସହାଯ୍ୟରେ ସେହି ବାଘକୁ ମାରି ପକାଇବେ । ବାଘ ନିଶ୍ଚିତ ଭାବରେ ମରି ଯାଇଥିବା ଖବର ପାଇଲେ ତୁମେ ଖଣ୍ଡେ ଲଇ ନେଇ ବାଘ ପାଖରେ ହାଜର ହେବ । ସେଇଠି କହିବ, ରାଜାଙ୍କର ଆଦେଶ ଥିଲା, ଜୀବନରେ ନ ମାରି ତାକୁ ଏକ ବଳଦ ପରି ଲଇରେ ବାନ୍ଧି ଘୋଷାଡ଼ି ଘୋଷାଡ଼ି ନେଇ ରାଜାଙ୍କ ପାଖରେ ହାଜର କରିବାକୁ । ସେଥିପାଇଁ ମୁଁ ଲଇ ଆଣିବାକୁ ଯାଇଥିଲି । କିନ୍ତୁ ମୋ' ଆସିବା ଆଗରୁ କିଏ ତାକୁ ଜୀବନରେ ମାରି ଦେଇଛି । ଏ କଥା ରାଜା ଜାଣିଲେ ଅସନ୍ତୁଷ୍ଟ ହେବେ । କିଏ ମାରିଛି କହିଲେ, ମୁଁ ରାଜାଙ୍କୁ ସେ କଥା ଜଣାଇବି । ସେ ଦଣ୍ଡ ପାଇବ ।

ତୁମ ମୁହଁରୁ ଏକଥା ଶୁଣି ଲୋକେ ଭୟ ପାଇଯିବେ । ସେମାନେ ତୁମକୁ ଅର୍ଥ ଦେଇ ସନ୍ତୁଷ୍ଟ କରିବେ । ଏଣେ ମଲା ବାଘକୁ ରାଜାଙ୍କ ପାଖକୁ ନେଇଗଲେ, ସେ ପୁରସ୍କାର ଦେବେ ।

ଭୀମସେନ ବୋଧିସତ୍ତ୍ୱଙ୍କ ପରାମର୍ଶ ଅନୁଯାୟୀ କାମ କଲା ଓ ଗ୍ରାମବାସୀମାନଙ୍କ ପାଖରୁ ଅର୍ଥ ତଥା ରାଜାଙ୍କ ପାଖରୁ ପୁରସ୍କାର ଲାଭ କଲା ।

ଏହାର କିଛିଦିନ ପରେ ରାଜ୍ୟରେ ଆଉ ଏକ ଘଟଣା ଘଟିଲା । ବଣ ଭିତରୁ ଗୋଟିଏ ଅରଣା ମଇଁଷି ବାହାରି ଉପଦ୍ରବ ଆରମ୍ଭ କରିଦେଲା । ରାସ୍ତାରେ ଲୋକେ ନିରାପଦରେ ଯିବାଆସିବା କରି-ପାରିଲେ ନାହିଁ । ରାଜା ଭୀମସେନକୁ ଡାକି ପ୍ରଜାମାନଙ୍କୁ ଅରଣା-ମହିଷର ଉପଦ୍ରବ ରକ୍ଷାକରିବାକୁ କହିଲେ । ବୋଧିସତ୍ତ୍ୱଙ୍କ ପରାମର୍ଶ ଗ୍ରହଣ କରି ଭୀମସେନ ସେହି ବାଘ ମାରିବାର କୌଶଳ ଅବଲମ୍ବନ କଲା ଓ ଲୋକଙ୍କ ପାଖରୁ ଅର୍ଥ ତଥା ରାଜାଙ୍କ ପାଖରୁ ପୁରସ୍କାର ଲାଭ କଲା ।

ଏହି ଘଟଣା ପରେ ଭୀମସେନ ରାଜାନୁଗ୍ରହ ଲାଭ କଲା । କର୍ମ-ଚାରୀମାନେ ତାକୁ ସମ୍ମାନ ଦେବାକୁ ଲାଗିଲେ । ରାଜାନୁଗ୍ରହ ଲାଭ କରିବା ପରେ ଭୀମସେନର ଗର୍ବଭାବ ଜାତ ହେଲା । ସେ ଏଥର ବୋଧିସତ୍ତ୍ୱଙ୍କୁ ଅବଜ୍ଞା କରିବାକୁ ଲାଗିଲା । ଶୁଣାଇ ଶୁଣାଇ କହିଲା, ତୁମେ କିମ୍ବା ତୁମର ପରାମର୍ଶ ମୋର ଆଉ ଆବଶ୍ୟକ ନାହିଁ । ମୁଁ ନିଜେ ସବୁ କରିପାରିବି ।

ବୋଧିସତ୍ତ୍ୱ ଭୀମସେନର ଗର୍ବଭାବ ଜାଣିଲେ ଓ ନୀରବ ରହିଲେ ।

ଅଳ୍ପ କିଛିଦିନ ପରେ ଆଉ ଜଣେ ରାଜା ସୈନ୍ୟସାମନ୍ତ ନେଇ ବାରାଣସୀ ଅବରୋଧ କଲେ । ସେ ବାରାଣସୀ ରାଜାଙ୍କ ନିକଟକୁ ଖବର ପଠାଇଲେ, "ଶୀଘ୍ର ଆସି ଆମ ପାଖରେ ଶରଣ ପଶ, ନହୁବା ଯୁଦ୍ଧ କର ।"

ରାଜା ଭୀମସେନକୁ ଯୁଦ୍ଧ କରିବାକୁ ଆଦେଶ ଦେଲେ ।

ଭୀମସେନ ଯୁଦ୍ଧପୋଷାକ ପିନ୍ଧି ବାଧ୍ୟ ହୋଇ ହାତୀ ଉପରେ ଚଢ଼ିଲା ଓ ଯୁଦ୍ଧକ୍ଷେତ୍ରକୁ ବାହାରିଲା ।

ବୋଧିସତ୍ତ୍ୱ ଜାଣି ପାରିଲେ, ଏଥର ଭୀମସେନ ଯୁଦ୍ଧକ୍ଷେତ୍ରରେ ଜୟଲାଭ କରି ଅକ୍ଷତ ଶରୀରରେ ଫେରି ଆସିପାରିବ ନାହିଁ । ତେଣୁ ତାକୁ ଦୟାକରି ସେ ନିଜେ ମଧ୍ୟ ଯୁଦ୍ଧପୋଷାକ ପିନ୍ଧିଲେ ଓ ହାତୀ ଉପରେ ବସି ଭୀମସେନ ସଙ୍ଗରେ ଯୁଦ୍ଧକ୍ଷେତ୍ରକୁ ଗଲେ ।

ଯୁଦ୍ଧ ଭୂଇଁରେ ଶତ୍ରୁ ସୈନ୍ୟଙ୍କୁ ଦେଖି ଓ ସମର ବାଦ୍ୟ ଶୁଣି, ଭୀମସେନର ହାଲୁକ ଶୁଖିଗଲା । ସେ ବରଡାପତ୍ର ପରି ଥରିବାକୁ ଲାଗିଲା । ବୋଧିସତ୍ତ୍ୱ କହିଲେ, "ସାହସ ବାନ୍ଧି ବସ । ନ ହେଲେ ଥରି ଥରି ତଳକୁ ଗଡ଼ିପଡ଼ିବ । ଅବଶେଷରେ ହାତୀ ପାଦରେ ଚକଟି ହେବ ।" ଏହା ପରେ ଭୀମସେନକୁ ସେ ଦମ୍ଭକରି ବାନ୍ଧି ଦେଲେ ଓ ରଜ୍ଜୁଟାକୁ ନିଜେ ଧରିଲେ ।

ତଥାପି ଭୀମସେନର ଭୟ ଗଲା ନାହିଁ । ସେ ଆହୁରି ଆହୁରି ଥରିଲା । ବୋଧିସତ୍ତ୍ୱ ପ୍ରଶ୍ନକଲେ, "କିହୋ ଭୀମସେନ ! ତୁମେ ପରା ସବୁ କାମ ନିଜ ହାତରେ କରିବ ବୋଲି କହୁଥିଲ ! ଏବେ କଣ ହେଲା ?"

ଭୀମସେନ ନିରୁତ୍ତର ରହିଲା ।

ବୋଧିସତ୍ତ୍ୱ ତାକୁ ସାନ୍ତ୍ୱନା ଦେଇ କହିଲେ, "ମୁଁ ତୁମକୁ ରକ୍ଷା କରିବି । ଏଥର ତୁମେ ସ୍ଥିର ହୁଅ ।"

ଏହା ପରେ ବୋଧିସତ୍ତ୍ୱ ଭୀମସେନକୁ ହାତୀ ଉପରୁ ଓହ୍ଲାଇ ଦେଇ ଘରକୁ ପଠାଇଦେଲେ ।

ବୋଧିସତ୍ତ୍ୱ ଏକାକୀ ହାତୀ ଉପରେ ବସି ଯୁଦ୍ଧଚାଳନା କଲେ । ସେ ଶତ୍ରୁ ବ୍ୟୂହ ଭେଦକରି ଶତ୍ରୁ ରାଜାଙ୍କୁ ବନ୍ଦୀ କରି ବାରାଣସୀ ରାଜାଙ୍କ ଆଗରେ ହାଜର କଲେ ।

ଏହା ପରେ ରାଜା ବୋଧିସତ୍ତ୍ୱଙ୍କର ବୀରତ୍ୱ ଚିହ୍ନି ତାଙ୍କୁ ପ୍ରଶଂସା କଲେ ଓ ପୁରସ୍କାର ସ୍ୱରୂପ ଯଥେଷ୍ଟ ଧନସମ୍ପଦ ଅର୍ପଣ କଲେ । ସେ ଭୀମସେନଙ୍କୁ ମଧ୍ୟ ଅର୍ଥଦାନ କରି ନିଜ ଦେଶକୁ ପଠାଇଦେଲେ ।

ବୋଧିସତ୍ତ୍ୱଙ୍କ ଯଶପୌରୁଷ ସାରା ଭାରତରେ ବ୍ୟାପିଗଲା । ସେ ଯେଉଁ ଅର୍ଥଲାଭ କରୁଥିଲେ, ତାହାକୁ ଦାନ ଓ ପୁଣ୍ୟ କାର୍ଯ୍ୟରେ ବିନିଯୋଗ କରୁଥିଲେ । ମୃତ୍ୟୁ ପରେ ସେ ମୋକ୍ଷଗତି ପ୍ରାପ୍ତ ହେଲେ ।





ଏକଦା ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ସେତେବେଳେ ବୋଧିସତ୍ତ୍ୱଙ୍କର ଜଣେ ବୃଦ୍ଧ କୃଷକ ବନ୍ଧୁ ଥିଲା । ସେ ବହୁ ଧନ ସମ୍ପଦର ମାଲିକ ଥିଲା । ସେ ଏକ ଯୁବତୀ ସ୍ତ୍ରୀ ବିବାହ କରିଥିଲା । କାଳକ୍ରମେ ସେମାନଙ୍କର ଏକ ପୁତ୍ରସନ୍ତାନ ଲାଭ ହେଲା ।

ଦିନେ ବୃଦ୍ଧ ନିଭୃତରେ ବସି ଚିନ୍ତା କଲା, ମୋର ଏବେ ବୃଦ୍ଧାବସ୍ଥା । ପୁତ୍ରଟିର ବୟସ ଖୁବ୍ କମ୍ । ଯଦି ମୋର ମୃତ୍ୟୁ ହୋଇଯାଏ, ଯୁବତୀ ସ୍ତ୍ରୀ ହୁଏତ ଅନ୍ୟ କାହାକୁ ବିବାହ କରି ମୋର ଧନରତ୍ନ ନେଇ ଆରାମରେ ଚଳିବ । ପୁଅ ମୋର ଅନାଥ ହୋଇଯିବ । ତେଣୁ ମୋ' ପୁଅର ନିରାପତ୍ତା ପାଇଁ ଧନରତ୍ନ ସବୁ ନେଇ ଗୁପ୍ତ ସ୍ଥାନରେ ଲୁଚାଇ ରଖିବି ।

ସେହି ବୃଦ୍ଧ କୃଷକର ଗୋଟିଏ ଚାକର ଥିଲା । ତା ନାଁ ନନ୍ଦ । ଦିନେ ସେ ନନ୍ଦକୁ ସଙ୍ଗରେ ନେଇ ଉଦ୍ୟାନକୁ ଗଲା । ସେଇଠି ନନ୍ଦ ହାତରେ ଗୋଟିଏ ଗାତ ଖୋଳାଇ ଧନସମ୍ପଦକୁ ତା ଭିତରେ ପୋତି ପକାଇଲା । ତାପରେ ନନ୍ଦକୁ କହିଲା, ତୁ ମୋର ନିହାତି ବିଶ୍ୱାସୀ ଲୋକ ଅଟୁ । ଏଠାରେ ଧନ ସମ୍ପଦ ପୋତିଛି ବୋଲି କାହାରି ଆଗରେ ପ୍ରକାଶ କରିବୁ ନାହିଁ । ମୁଁ ଯଦି ମରିଯାଏଁ, ମୋ ପୁଅ ବଡ଼ ହେଲେ, ତାରି ହାତରେ ଦେବୁ । ଉଦ୍ୟାନର ଗଛବୃକ୍ଷ ଯେମିତି ବିକ୍ରି ନ ହୁଏ, ସେଥି-ପାଇଁ ଦୃଷ୍ଟି ଦେବୁ ।

ଧନ ପୋତିଥିବା କଥା ବୃଦ୍ଧ ତା' ସ୍ତ୍ରୀକୁ ମଧ୍ୟ କହିଲା ନାହିଁ । କିନ୍ତୁ ବୃଦ୍ଧର ସ୍ତ୍ରୀ ଏ ସମସ୍ତ କଥା ଲକ୍ଷ୍ୟ କରିଥିଲା ।

ଏହାର କିଛି କାଳ ପରେ ବୃଦ୍ଧର ମୃତ୍ୟୁ ହେଲା ।

ଶିଶୁ ପୁତ୍ରଟି ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନ ଅବସ୍ଥା ପ୍ରାପ୍ତ ହେଲା ।

ବୃଦ୍ଧର ଆଶଙ୍କା ଭୁଲ ପ୍ରତିପାଦିତ ହେଲା । ତାର ମୃତ୍ୟୁ ପରେ ତା' ସ୍ତ୍ରୀ ପୁନର୍ବିବାହ କଲା ନାହିଁ । ଶିଶୁ ପୁତ୍ରର ଦାୟିତ୍ୱ ସମ୍ଭାଳି ତାକୁ ଲାଳନପାଳନ କରି ବଡ଼ କଲା ।

ପୁତ୍ର ସମର୍ଥ ହେବା ପରେ ଦିନେ ବୃଦ୍ଧର ବିଧବା ପତ୍ନୀ ତାକୁ ପାଖକୁ ଡାକି କହିଲା ତୋ' ବପର ବହୁ ଧନସମ୍ପଦ ଥିଲା । ମୃତ୍ୟୁ ପୂର୍ବରୁ ସେ ବିଶ୍ୱସ୍ତ ଚାକର ନନ୍ଦକୁ ସଙ୍ଗରେ ନେଇ, କୌଣସି ଗୁପ୍ତ ସ୍ଥାନରେ ସେହି ଧନସମ୍ପଦ ସବୁ ପୋତି ରଖିଛନ୍ତି । ନନ୍ଦକୁ ସଙ୍ଗରେ ନେଇ, ସେହି ପୋତ ଧନ ଉଦ୍ଧାର କର ଓ ଘର ଦାୟିତ୍ୱ ସମ୍ଭାଳ ।

ବୃଦ୍ଧର ମୃତ୍ୟୁ ପରେ ମଧ୍ୟ ନନ୍ଦ ସେହି ଘରେ ଚାକିରି କରୁଥିଲା ।

ମାଆର କଥା ଶୁଣି ସମର୍ଥ ପୁତ୍ର ନନ୍ଦ ପାଖକୁ ଗଲା ଏବଂ କହିଲା, ମଉସା ! ତୁମେ ମୋ ବାପା ସମ୍ପତ୍ତି ପୋତିଥିବା କଥା କଣ ଜାଣ ?

ନନ୍ଦ କହିଲା, ହଁ, ତୁମ ବାପା ସମ୍ପତ୍ତି ପୋତିଥିବା କଥା ମୋତେ ଜଣାଅଛି ।

କେଉଁଠି ପୋତିଛନ୍ତି କହିପାରିବ ? ସମର୍ଥ ପୁତ୍ର ପ୍ରଶ୍ନ କଲା ।

ମୋ' ସଙ୍ଗରେ ଉଦ୍ୟାନକୁ ଚାଲ । ପୋତାଧନ ଦେଖାଇଦେବି । ନନ୍ଦ କହିଲା ।

ଦୁହେଁଯାକ କୋଡ଼ି ଓ ଟୋକେଇ ନେଇ ଉଦ୍ୟାନକୁ ଗଲେ ।

ଉଦ୍ୟାନରେ ପହଞ୍ଚି ସମର୍ଥ ପୁତ୍ର କହିଲା, ପୋତାସ୍ଥାନ ଦେଖାଇ ଦିଅ ।

ନନ୍ଦ ମନକୁ ପାପ ଛୁଇଁଲା । ସେ ମନେ ମନେ ଭାବିଲା, ଧନ ପୋତିଥିବା ଲୋକ ଇହଧାମରେ ନାହିଁ । ତା' ପୁଅ ସେ ବିଷୟରେ କିଛି ଜାଣେ ନାହିଁ । ତେଣୁ ସେ ସମ୍ପଦକୁ ମୁଁ ନିଜେ ଅଧିକାର କରି ନେଇ ପାରିବି । ଏଇଆ ଭାବି, ଧନ ପୋତା ହୋଇଥିବା ସ୍ଥାନ ଉପରେ ସେ ନିଜେ ଛିଡ଼ା ହୋଇପଡ଼ିଲା ଏବଂ କହିଲା, ତୋଠୁ ବଳି ମୂର୍ଖ କେହି ନାହିଁ । ନିର୍ବୋଧ । ଉଦ୍ୟାନ ଭିତରେ କିଏ କଣ ଧନ ପୋତି ରଖେ ।

ଯୁବକଟି ନନ୍ଦ କଥା ଶୁଣି ଆଶ୍ଚର୍ଯ୍ୟ ହେଲା ଓ ସେ କଥା ଶୁଣି ନ ଥିବାର ଛଳନା କଲା । ସେ କୌଣସି ବିରକ୍ତି ପ୍ରକାଶ ନ କରି କହିଲା, ଯଦି ଏଠି ଧନ ନାହିଁ, ମିଛରେ ଖୋଳାଖୋଳି କରି ଲାଭ କଣ ? ଚାଲ, ଘରକୁ ଫେରିଯିବା ।

ଏହା ପରେ ନନ୍ଦ ଓ ଯୁବକ ଘରକୁ ଫେରିଗଲେ ।

କିଛିଦିନ ପରେ ଯୁବକଟି ନନ୍ଦକୁ ପୁଣି ତା' ବାପାର ପୋତାଧନ କଥା ପଚାରିବାରୁ, ନନ୍ଦ ତା ଆଗରେ ଉଦ୍ୟାନ ଭିତରେ ଧନ ପୋତା ହୋଇଥିବା କଥା ପ୍ରକାଶ କଲା । ପୂର୍ବ ପରି ଉଭୟେ କୋଡ଼ି ଓ ଟୋକେଇ ଧରି ଉଦ୍ୟାନ ଭିତରକୁ ଗଲେ । ନନ୍ଦ ପୁନର୍ବାର ଧନ ପୋତା ହୋଇଥିବା ସ୍ଥାନ ଉପରେ ଛିଡ଼ା ହୋଇ ଯୁବକଟିକୁ ଗାଳି ଗୁଲଜ କଲା । ମାତ୍ର ଯୁବକ ସେ କଥାରେ କାନ ନ ଦେଇ ନନ୍ଦକୁ ନିଜ ସାଙ୍ଗରେ ଘରକୁ ଫେରାଇ ଆଣିଲା ।

ଯୁବକ ଘରେ ପହୁଞ୍ଚି ମନକୁ ମନ ଭାବିଲା, କଥା କଣ ? ନନ୍ଦ ଘରେ ଥିଲାବେଳେ କହୁଛି ଯେ, ପିତା ମରିବା ପୂର୍ବରୁ ଟଙ୍କା ସୁନା ପୋତି ପକାଇଥିଲେ ଓ ସେ ସ୍ଥାନଟି ସେ ଜାଣିଛି । କିନ୍ତୁ କୋଡ଼ି ଟୋକେଇ ଧରି ଉଦ୍ୟାନକୁ ପୋତା ଧନ ଉଦ୍ଧାର ପାଇଁ ଗଲେ, ନନ୍ଦ ସେହି ସ୍ଥାନଟି ମୋତେ ଦେଖାଇ ଦେଉ ନାହିଁ । ଓଲଟି ଅଭଦ୍ର କଥା କହୁଛି । ଏଥିରେ ନିଶ୍ଚୟ କିଛି ଭେଦ ଅଛି । ଏ କଥା ମୋ' ବାପାଙ୍କର ସେହି କୃଷକ ବନ୍ଧୁଙ୍କଠାରୁ ବୁଝିଲେ ଜଣା ପଡ଼ିବ ।

ଏହା ପରେ ଯୁବକଟି ବୋଧିସତ୍ତ୍ୱଙ୍କ ନିକଟକୁ ଗଲା ଓ ସମସ୍ତ ଘଟଣା ପ୍ରକାଶ କଲା ।

ବୋଧିସତ୍ତ୍ୱ ସମସ୍ତ ଘଟଣା ଶୁଣିସାରିବା ପରେ ପରାମର୍ଶ ଦେଲେ, ମୋର ମନେହୁଏ, ଉଦ୍ୟାନ ଭିତରେ ପ୍ରବେଶ କରିବା ପରେ, ନନ୍ଦ ଯେଉଁ ସ୍ଥାନରେ ଛିଡ଼ା ହୋଇ ଗାଳିଗୁଲଜ କରୁଛି, ସେଇଠି ତୁମ ବାପା ଧନସମ୍ପଦ ପୋତିଛନ୍ତି । ଏଥର ତୁମେ ତାକୁ ସଙ୍ଗରେ ନେଇ ଆଉ ଥରେ ଉଦ୍ୟାନକୁ ଯାଅ । ସେ ଯେଉଁଠି ଛିଡ଼ା ହୋଇ ତୁମକୁ ଗାଳିଗୁଲଜ କରିବ, ତୁମେ ନୀରବ ନ ରହି, ତାକୁ ଗାଳି ଦେବ । ପୁଣି ତାକୁ ସେଇ ସ୍ଥାନରୁ ବାହାର କରିଦେଇ, କୋଡ଼ି ସାହାଯ୍ୟରେ ସେହି ସ୍ଥାନକୁ ଖୋଳି ପକାଇବ । ମୋର ମନେହୁଏ, ସେହି ସ୍ଥାନରୁ ତୁମ ବାପା ପୋତି ଯାଇଥିବା ଟଙ୍କା ସୁନା ମିଳିବ । ତାକୁ ଚାକର ନନ୍ଦକୁ ମୁଣ୍ଡେଇବାକୁ କହି ତା ସଙ୍ଗରେ ଘରକୁ ଫେରି ଆସିବ ।

ଯୁବକଟି ବୋଧିସତ୍ତ୍ୱଙ୍କ ଉପଦେଶ ମାନି, ପୁନର୍ବାର ନନ୍ଦ ସଙ୍ଗରେ ଉଦ୍ୟାନକୁ ଗଲା । ନନ୍ଦ ଯେଉଁ ସ୍ଥାନରେ ଛିଡ଼ା ହୋଇ ଗାଳି ଗୁଲଜ କରିବା ଆରମ୍ଭ କରିଦେଲା, ଯୁବକଟି ତାକୁ ସେହି ସ୍ଥାନରୁ ଠେଲି ଦେଇ, କୋଡ଼ି ସାହାଯ୍ୟରେ ସେ ସ୍ଥାନ ଖୋଳିବାକୁ ଲାଗିଲା । ସତକୁ ସତ ତା' ଭିତରୁ ଗୁପ୍ତ ଧନ ସବୁ ମିଳିଗଲା । ଯୁବକଟି ଏଥର ନନ୍ଦକୁ ସେହି ଗୁପ୍ତଧନ ସବୁ ଟୋକେଇରେ ରଖି ମୁଣ୍ଡେଇବାକୁ ଆଦେଶ ଦେଲା ଓ ଖୁସି ହୋଇ ଘରକୁ ଫେରିଲା ।

ଏହି ଘଟଣା ପରେ ଯୁବକଟି ବୋଧିସତ୍ତ୍ୱଙ୍କ କଥା ମାନି ଚଳି-ଥିଲା । ପୋତାଧନ ପ୍ରାପ୍ତି ପରେ ତାର ଅସତ୍ ବ୍ୟବହାର ନ କରି' ସେ ଦାନପୁଣ୍ୟ କରିବାକୁ ଲାଗିଲା । ବହୁଦିନ ପର୍ଯ୍ୟନ୍ତ ସତ୍ ମାର୍ଗରେ ଚାଲିବା ଫଳରେ ଶେଷରେ ମୋକ୍ଷଗତି ଲାଭ କଲା ।




ଏକଦା ବାରାଣସୀରେ ଦଶରଥ ନାମରେ ଜଣେ ବିଖ୍ୟାତ ରାଜା ରାଜୁତି କରୁଥିଲେ । ସେ ମନ୍ଦ ପଥ ପରିତ୍ୟାଗପୂର୍ବକ ସତ୍ ଓ ନ୍ୟାୟ ମାର୍ଗରେ ରାଜ୍ୟ ଶାସନ କରୁଥିଲେ । ତାଙ୍କର ଷୋଳ ହଜାର ରାଣୀ ଥିଲେ । ପାଟରାଣୀଙ୍କ ଗର୍ଭରୁ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ରଙ୍କର ନାମ ଥିଲା ରାମ ପଣ୍ଡିତ । କନିଷ୍ଠ ପୁତ୍ରଙ୍କର ନାମ ଲକ୍ଷ୍ମଣ । କନ୍ୟାଟିର ନାମ ଥିଲା ସୀତା ।

କିଛି ବର୍ଷ ପରେ ମହାରାଣୀଙ୍କର କାଳ ହେଲା । ରାଜା ଦଶରଥ ଏଥିରେ ଅତ୍ୟନ୍ତ ମ୍ରିୟମାଣ ହେଲେ ଓ ଦୁଃଖରେ କାଳଯାପନ କଲେ । କିନ୍ତୁ ମନ୍ତ୍ରୀମାନଙ୍କର ଅନୁରୋଧକ୍ରମେ ପୁନରାୟ ବିବାହ କରି ଆଉ ଜଣକୁ ପାଟରାଣୀ କଲେ । ରାଜା ଏହି ନବବିବାହିତ ପାଟରାଣୀଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । କାଳକ୍ରମେ ସେ ସନ୍ତାନବତୀ ହେଲେ । ନବଜାତ ପୁତ୍ରର ନାମ ରଖାଗଲା ଭରତ ।

ରାଜା ଦଶରଥ ନବଜାତ ପୁତ୍ର ଭରତକୁ ଅତ୍ୟନ୍ତ ଭଲ ପାଇବାକୁ ଲାଗିଲେ । ଦିନେ ସେ ପାଟରାଣୀଙ୍କୁ କହିଲେ, ମୁଁ ତୁମକୁ ଗୋଟିଏ ବର ଦେବାକୁ ଚାହୁଁଛି । ଯାହା ମାଗିବ, ଦେବି । ରାଣୀ ବର ଗ୍ରହଣ କରବାକୁ ସ୍ୱୀକୃତ ହୋଇ କହିଲେ, ଏବେ ନୁହ, ପରେ ମୁଁ ଏହା ନିଜେ ମାଗି ନେବି । ରାଜା ଏଥିରେ ଅଙ୍ଗୀକାର କଲେ ।

ନବଜାତ ପୁତ୍ର ଭରତ କ୍ରମେ ବଡ ହୋଇ ସପ୍ତମ ବର୍ଷ ଅତିକ୍ରମ କଲେ । ମହାରାଣୀ ରାଜାଙ୍କ ଛାମୁରେ ଉପସ୍ଥିତ ହୋଇ କହିଲେ, ମହାରାଜ ! ପୁତ୍ର ଉପରେ ସନ୍ତୁଷ୍ଟ ହୋଇ ମୋତେ ଥରେ ବର ଯାଚିଥିଲ, ମନେ ଅଛି ? ବର୍ତ୍ତମାନ ମୁଁ ସେହି ବର ମାଗିବାକୁ ଆସିଛି ।

ହଁ, ମୋର ସବୁ ମନେ ଅଛି । କି ବର ଚାହୁଁଛ, ମାଗ । ମୁଁ ମୋର ପ୍ରତିଜ୍ଞା ପୂରଣ କରିବି । ରାଜା ଉତ୍ତର ଦେଲେ ।

ମୋ' ପୁଅକୁ ରାଜସିଂହାସନ ଦିଅ । ଏହା ମୋର ମାଗୁଣି । ରାଣୀ କହିଲେ ।

ରାଜା ଏହା ଶୁଣି ରାଗିଯାଇ କହିଲେ, ଏ କଣ କହୁଛ ? ଶୀଘ୍ର ମୋ' ସାମନାରୁ ଅନ୍ତର ହୁଅ । ଭରତ ଉପରେ ଆହୁରି ମୋର ଦୁଇଟି ବଡ ପୁଅ ଅଛନ୍ତି । ସେମାନେ ରୂପ, ଗୁଣ ଓ ବିଦ୍ୟାରେ ନ୍ୟୂନ ନୁହନ୍ତି । ସେମାନେ ଥାଉ ଥାଉ ସାନ ପୁଅକୁ ରାଜା କରିବି ? ସେମାନଙ୍କୁ ମାରି, ତୁମେ ତୁମ ନିଜ ପୁଅକୁ ରାଜା କରିବାକୁ ଚାହଁ ?

ରାଜାଙ୍କର କ୍ରୋଧ ଦେଖି ରାଣୀ ଭୟରେ ନିଜ ଅନ୍ତଃପୁରକୁ ଫେରି ଗଲେ । କିନ୍ତୁ ସେ ନିଜ କଥାରେ ଅଟଳ ରହି, ବାରମ୍ବାର ମହାରାଜାଙ୍କୁ ସେହି କଥା କହିଲେ । କିନ୍ତୁ ରାଜା ସହଜରେ ଏଥିରେ ରାଜି ହେଲେ ନାହିଁ । ସେ ମନେ ମନେ ଭାବିଲେ, ନାରୀମାନେ ଅକୃତଜ୍ଞ ଓ ବିଶ୍ୱାସ-ଘାତିନୀ ଅଟନ୍ତି । ଏହି ରାଣୀ ଯେ କୌଣସି ମନ୍ଦ ଉପାୟ ଅବଲମ୍ବନ କରି ମୋର ବଡ ପୁଅ ଦୁଇଜଣଙ୍କୁ ହତ୍ୟା କରି ଦେଇପାରେ । ଏହା ଭାବି ସେ ବଡ ପୁଅ ଦୁଇଜଣଙ୍କୁ ନିଜ ପାଖକୁ ଡକାଇ କହିଲେ, ନୂଆ ରାଣୀ ତା' ପୁଅ ଭରତକୁ ରାଜା କରିବାକୁ ଚାହୁଁଛି । ତୁମେ ବାରଣସୀରେ ରହିଲେ ତୁମ ଉପରେ ବିପଦ ପଡିପାରେ । ତେଣୁ ଏ ରାଜ୍ୟ ଛାଡି କୌଣସି ପଡୋଶୀ ଚନ୍ଦ୍ରରାଜ୍ୟ କିମ୍ବା ବଣକୁ ଚାଲିଯାଅ । ମୋର ମୃତ୍ୟୁ ପରେ ତୁମେ ପୁନର୍ବାର ଏଠାକୁ ଫେରି ଆସି ରାଜ-ସିଂହାସନ ଦଖଲ କରିବ ।

ଏହା ପରେ ରାଜା ଜ୍ୟୋତିଷ ଡକାଇ ନିଜର ଜାତକ ଗଣନା କରାଇଲେ, ଜ୍ୟୋତିଷ ଜାତକ ଗଣନା କରି କହିଲେ ଯେ, ତାଙ୍କର ପରମାୟୁ ଆହୁରି ବାର ବର୍ଷ ବାକି ଅଛି । ରାଜା ନିଜ ବଡ ପୁଅ ଦୁହିଁଙ୍କୁ କହିଲେ, ବାର ବର୍ଷ ପରେ ଯେଉଁଠି ଥିବ ଫେରି ଆସିବ ଓ ପରମ୍ପରା ଅନୁଯାୟୀ ସିଂହାସନ ଦଖଲ କରିବ ।

ରାମ ଓ ଲକ୍ଷ୍ମଣ ପିତାଙ୍କ କଥାରେ ସମ୍ମତ ହୋଇ, ତାଙ୍କ ପାଦ-ଧୂଳି ନେଇ ରାଜ୍ୟତ୍ୟାଗ ଉଦ୍ଦେଶ୍ୟରେ ବାହାରିଲେ । ସୀତା ଏହା ଦେଖି ଦୁଇଭାଇଙ୍କ ସଙ୍ଗରେ ଚାଲିଯିବାକୁ ବାହାରିଲେ । ତିନିଜଣ ଯାକ କାନ୍ଦି କାନ୍ଦି ବାରଣସୀ ପରିତ୍ୟାଗ କଲେ ।

ରାଜ୍ୟର ପ୍ରଜାମାନେ ଏ ତିନିଜଣଙ୍କୁ ଖୁବ୍ ଭଲ ପାଉଥିବାରୁ ସେମାନଙ୍କୁ ବଳେଇ ଦେଇ ଆସିବାକୁ ବହୁଦୂର ପର୍ଯ୍ୟନ୍ତ ସେମାନଙ୍କ ଅନୁଗମନ କରିଥିଲେ । ଶେଷରେ ପ୍ରଜାମାନଙ୍କୁ ବିଦାୟ ଦେଇ ସେମାନେ ହିମାଳୟ ଯାତ୍ରା କଲେ । ପଥ ମଧ୍ୟରେ ଗୋଟିଏ ସୁନ୍ଦର ସ୍ଥାନ ସେମାନଙ୍କ ଦୃଷ୍ଟିରେ ପଡିଲା । ପାଖରେ ଝରଣା ଥିଲା ଓ ସୁନ୍ଦର ଫଳ ଉଦ୍ୟାନ ଥିଲା । ସ୍ଥାନଟି ଉପଯୁକ୍ତ ମନେ କରି ସେମାନେ ଏକ କୁଟୀର ନିର୍ମାଣ କଲେ ଓ ବନବାସ-ଜୀବନ ଆରମ୍ଭ କଲେ ।

ପ୍ରଥମେ ରାମ ପଣ୍ଡିତ ଯାଇ ସମସ୍ତଙ୍କ ପାଇଁ ବଣରୁ ଫଳମୂଳ ସଂଗ୍ରହ କରି ଆଣୁଥିଲେ । କିନ୍ତୁ ଲକ୍ଷ୍ମଣ ଓ ସୀତା କହିଲେ, ତୁମେ

ଜ୍ୟେଷ୍ଠ ଭାଇ । ଆମର ପିତା ସମାନ । ଆମେ ଥାଉଁ ଥାଉଁ ତୁମକୁ ଫଳମୂଳ ପାଇଁ ପଠାଇବୁ ନାହିଁ । ତୁମେ କୁଟୀର ଭିତରେ ରହ ଆମେ ଫଳମୂଳ ବ୍ୟବସ୍ଥା କରିବୁ ।

ରାମ ପଣ୍ଡିତ ଏଥିରେ ରାଜି ହେଲେ । ସେ କୁଟୀର ଭିତରେ ରହିଲେ । ଲକ୍ଷ୍ମଣ ଓ ସୀତା ଯାଇ ବଣରୁ ଫଳମୂଳ ସଂଗ୍ରହ କରି ଆଣିଲେ । ଏହିପରି ଭାବରେ ସେମାନେ ବନବାସ ଜୀବନ ଅତିବାହିତ କରିବାକୁ ଲାଗିଲେ ।

ରାମ, ଲକ୍ଷ୍ମଣ ଓ ସୀତା ନଗର ଛାଡ଼ି ଚାଲିଯିବା ପରେ ଦଶରଥ ସେମାନଙ୍କୁ ଝୁରି ଝୁରି ନଅ ବର୍ଷ ପରେ ମରିଗଲେ । ମହାରାଜାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମାପ୍ତ ହେବା ପରେ ପରେ, ରାଣୀ ନିଜ ପୁତ୍ର ଭରତକୁ ରାଜସିଂହାସନରେ ବସାଇବାକୁ କହିଲେ । କିନ୍ତୁ ମନ୍ତ୍ରୀମାନେ ଏଥିରେ ରାଜି ହେଲେ ନାହିଁ । ସେମାନେ କହିଲେ, ରାଜସିଂହାସନର ଅଧିକାରୀ ବର୍ତ୍ତମାନ ବଣରେ ଅଛନ୍ତି । ଏକଥା ସମ୍ଭବ ହେବ କିପରି ?

ଏହା ଶୁଣି ଭରତ କହିଲେ, ମୁଁ ବଣକୁ ଯାଇ ବଡ ଭାଇଙ୍କୁ ଫେରାଇ ଆଣିବି ଓ ରାଜସିଂହାସନରେ ବସାଇବି ।

ଭରତ ଏହିପରି ଏକ ପ୍ରତିଜ୍ଞା କରି ସଙ୍ଗରେ ରାଜଦଣ୍ଡ ଓ ମନ୍ତ୍ରୀମାନଙ୍କୁ ନେଇ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଖୋଜିବାକୁ ବାହାରିଲେ । ବଣ ମଧ୍ୟରେ ଅନେକ ସ୍ଥାନ ବୁଲି ବୁଲି ଶେଷରେ ସେ ରାମଙ୍କର କୁଟୀର ଦେଖିବାକୁ ପାଇଲେ । କୁଟୀରର କିଛି ଦୂରରେ ଶିବିର ପକାଇ, ସଙ୍ଗରେ କେତେ ଜଣ ମନ୍ତ୍ରୀଙ୍କୁ ନେଇ ରାମଙ୍କର ସାକ୍ଷାତ ଉଦ୍ଦେଶ୍ୟରେ ଯାତ୍ରା କଲେ । ସେତେବେଳେ ରାମ ପଣ୍ଡିତ କୁଟୀରରେ ଏକାକୀ ଥିଲେ । ଲକ୍ଷ୍ମଣ ଓ ସୀତା ବଣରୁ ଫଳମୂଳ ସଂଗ୍ରହ କରିବାକୁ ଚାଲି ଯାଇଥିଲେ ।

ଭରତ ମନ୍ତ୍ରୀମାନଙ୍କ ସଙ୍ଗରେ ଯାଇ ରାମ ପଣ୍ଡିତଙ୍କ ଆଗରେ ସାଷ୍ଟାଙ୍ଗ ହେଲେ । ଏହା ପରେ ରାଜ୍ୟର ସମାଚାର ଓ ପିତାଙ୍କର ବିୟୋଗ ବାର୍ତ୍ତା ଜଣାଇ ଅଧୀର ହୋଇ କାନ୍ଦିବାକୁ ଲାଗିଲେ ।

କିନ୍ତୁ ରାମ ପଣ୍ଡିତ ଏ କଥା ଶୁଣି ଆଦୌ ବିଚଳିତ ହେଲେ ନାହିଁ । ତାଙ୍କ ଆଖିରୁ ଟୋପାଏ ହେଲେ ଲୁହ ବୋହିଲା ନାହିଁ । ସେ ସ୍ଥିର ଭାବରେ ସବୁ କଥା ଶୁଣିବାକୁ ଲାଗିଲେ ।

କ୍ରମେ ସଂଧ୍ୟା ହୋଇ ଆସିଲା । ଲକ୍ଷ୍ମଣ ଓ ସୀତା ବଣର ଫଳ-ମୂଳ ସଂଗ୍ରହ କରି ବସାରେ ପହୁଞ୍ଚିଲେ । ସେମାନଙ୍କୁ ଦେଖି ରାମପଣ୍ଡିତ ମନେ ମନେ ଭାବିଲେ, ଏମାନେ ବୟସରେ ମୋ'ଠୁ ସାନ । ପିତାଙ୍କର ମୃତ୍ୟୁ ସମ୍ବାଦ ପାଇ ଏମାନେ ଅଧୀର ହେବେ । କିଏ ଜାଣେ, ସେଭଳି ଅବସ୍ଥାରେ କ'ଣ ଘଟିବ ।

ତେଣୁ ରାମ ପଣ୍ଡିତ ଲକ୍ଷ୍ମଣ ଓ ସୀତାଙ୍କୁ ପ୍ରଥମେ ସମ୍ମୁଖସ୍ଥ ଜଳା-ଶୟରେ ସ୍ନାନ କରିବାକୁ ଆଦେଶ ଦେଲେ । ଲକ୍ଷ୍ମଣ ଓ ସୀତା ଜଳ

ଭିତରେ ପ୍ରବେଶ କରି ସାରିବା ପରେ, ରାମ କହିଲେ ଭରତ ଖବର ଆଣିଛନ୍ତି ଯେ ଆମର ପିତା ଆଉ ଇହଧାମରେ ନାହାନ୍ତି ।

ପିତାଙ୍କର ମୃତ୍ୟୁ ସମ୍ବାଦ ଶୁଣି ଲକ୍ଷ୍ମଣ ଓ ସୀତା ଜଳ ମଧ୍ୟରେ ମୂର୍ଚ୍ଛା ଗଲେ । ଏହିପରି ଅବସ୍ଥାରେ ସେମାନଙ୍କୁ ଜଳ ଭିତରୁ ଉଦ୍ଧାର କରାଯାଇ ସେବା ଶୁଶ୍ରୂଷା କରାଗଲା ।

ରାମ ପଣ୍ଡିତ କାନ୍ଦିବା ଦୂରର କଥା, ଟିକିଏ ମଧ୍ୟ ବିଚଳିତ ନ ହେବା ଦେଖି ଭରତ ଆଶ୍ଚର୍ଯ୍ୟ ହେଲେ । ସେ ସେହି କଥା ରାମଙ୍କୁ ପଚାରିଲେ ।

ରାମ ପଣ୍ଡିତ ଭରତଙ୍କୁ ବୁଝାଇ କହିଲେ, ଯେତେ ଜୋରରେ କାନ୍ଦିଲେ ମଧ୍ୟ ମୃତ୍ୟୁକୁ ଏଡ଼ାଇ ଦେଇହେବ ନାହିଁ । ତାହାହେଲେ ବୃଥାରେ କାନ୍ଦି ଲାଭ କଣ ?

ଯୁବକ-ବୃଦ୍ଧ, ନିର୍ବୋଧ-ଜ୍ଞାନୀ, ଧନୀ-ନିର୍ଦ୍ଧନ ସମସ୍ତେ ଦିନେ ମରିବେ । ପାଚିଲା ଫଳ ଦିନେ ନା ଦିନେ ଡାଳରୁ ଖସି ପଡ଼ିବା ଯେପରି ସ୍ୱତଃସିଦ୍ଧ, ମଣିଷ ଜନ୍ମ ପାଇ ମୃତ୍ୟୁ ଲାଭକରିବା ମଧ୍ୟ ସେହିପରି ଅନିବାର୍ଯ୍ୟ ।

ତେଣୁ ମୃତ ବ୍ୟକ୍ତି ପାଇଁ ନିଜକୁ କଷ୍ଟ ଦେବା ନିର୍ବୋଧତା ମାତ୍ର । ଜଗତର ପ୍ରତ୍ୟେକ ଜିନିଷ ଅସ୍ଥାୟୀ ।

ଯେଉଁ ବିଷୟର କୌଣସି ପ୍ରତିକାର ନାହିଁ, ତାକୁ ଧୀରସ୍ଥିର ଭାବରେ ମୁଣ୍ଡପାତି ଗ୍ରହଣ କରିନେବା ବିଜ୍ଞତାର ପରିଚାୟକ ।

ରାମ ପଣ୍ଡିତଙ୍କ ମୁଖରୁ ଏ ସମସ୍ତ ମନ୍ତବ୍ୟ ଶୁଣି ଲକ୍ଷ୍ମଣ ଓ ସୀତା ଶୋକ ପରିତ୍ୟାଗପୂର୍ବକ ପ୍ରକୃତିସ୍ଥ ହେଲେ ।

ଏହା ପରେ ଭରତ ରାମ ପଣ୍ଡିତଙ୍କୁ ବାରାଣସୀକୁ ଫେରି ଯାଇ ରାଜ୍ୟ ଭାର ଗ୍ରହଣ କରିବାକୁ କହିଲେ । କିନ୍ତୁ ରାମ ପଣ୍ଡିତ ସେ କଥାରେ ରାଜି ହେଲେ ନାହିଁ ।

ସେ କହିଲେ ପିତାଙ୍କର ଆଦେଶ ଥିଲା, ବାର ବର୍ଷ ପରେ ମୁଁ ବାରାଣସୀକୁ ଯାଇ ରାଜସିଂହାସନରେ ବସିବି । ଏବେ ନଅ ବର୍ଷ ମାତ୍ର ବିତିଛି । ଆହୁରି ତିନି ବର୍ଷ ବାକି ଅଛି । ଏପରି ଅବସ୍ଥାରେ ମୁଁ ଫେରି-ଯିବି କେମିତି ? ତେଣୁ ଲକ୍ଷ୍ମଣ ଓ ସୀତାଙ୍କୁ ଫେରାଇ ଦେଇ ଭରତଙ୍କୁ ରାଜ୍ୟ ଚଳାଇବାକୁ ସେ ଉପଦେଶ ଦେଲେ ।

ଭରତ ସିଂହାସନ ଆରୋହଣ କରିବାକୁ ସମ୍ମତ ହେଲେ ନାହିଁ ।

ଏହା ଦେଖି ରାମ ପଣ୍ଡିତ ନିଜର ପାଦୁକା ଦୁଇଟି ଦେଇ କହିଲେ, ଏହି ପାଦୁକାକୁ ନେଇ ଯାଅ । ଏହାକୁ ସିଂହାସନରେ ବସାଇ ରାଜ୍ୟ ଚଳାଇବ ।

ଭରତ ବାଧ୍ୟ ହୋଇ ରାମ ପଣ୍ଡିତଙ୍କର ପାଦୁକା ଆଣି ସିଂହାସନରେ ସ୍ଥାପନ କଲେ ଓ ରାଜ୍ୟ ଚଳାଇଲେ ।

ତିନି ବର୍ଷ ବିତିଯିବା ପରେ ରାମ ପଣ୍ଡିତ ନିଜ ରାଜ୍ୟକୁ ଫେରି ଆସିଲେ ।

ରାମପଣ୍ଡିତଙ୍କର ପ୍ରତ୍ୟାବର୍ତ୍ତନର ସମ୍ବାଦ ପାଇ ରାଜ୍ୟବାସୀ ଆନନ୍ଦ ପ୍ରକାଶ କଲେ ଓ ମହା ଆଡମ୍ବର ସହକାରେ ସମସ୍ତେ ମିଶି ତାଙ୍କୁ ପାଛୋଟି ନେଲେ ।

ଧର୍ମ ଓ ନ୍ୟାୟ ମାର୍ଗରେ ସେ ଷୋହଳ ହଜାର ବର୍ଷକାଳ ରାଜୁତି କରି ଅବଶେଷରେ ସ୍ୱର୍ଗାରୋହଣ କରିଥିଲେ ।





# ଲୋଭୀ ଶୃଗାଳ କଥା

ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲା ସମୟରେ, ବୋଧିସତ୍ତ୍ୱ ଶୃଗାଳ ରୂପେ ଜନ୍ମଗ୍ରହଣ କରିଥିଲେ । ସେ ନଦୀତୀରସ୍ଥ ଏକ ବଣରେ ବାସ କରୁଥିଲେ ।

ଥରେ ସେ ଦେଖିଲେ, ନଦୀ ତୀରରେ ଗୋଟିଏ ପ୍ରକାଣ୍ଡକାୟ ହସ୍ତୀ ମରି ପଡିଛି ।

ବୋଧିସତ୍ତ୍ୱ ଆହାର ଅନ୍ୱେଷଣରେ ବାହାରିଥିଲେ । ପ୍ରକାଣ୍ଡକାୟ ମୃତହସ୍ତୀକୁ ଦେଖି ଭାବିଲେ, ମୋର ଭାଗ୍ୟ ଆଜି ସୁପ୍ରସନ୍ନ । ମୃତହସ୍ତୀର ମାଂସରେ ଦିନେ ନୁହେଁକି ମାସେ ନୁହେଁ, ବହୁମାସ ପର୍ଯ୍ୟନ୍ତ ଚଳିଯାଇ ହେବ । ଆଉ ବଣରେ ଆହାର ସଂଗ୍ରହ ନିମନ୍ତେ ଏଣେତେଣେ ଖୋଜି ବୁଲିବାକୁ ପଡିବ ନାହିଁ ।

ଏହିପରି ଭାବି ସେ ହସ୍ତୀ ଦନ୍ତକୁ ଖାଇବାକୁ ଆରମ୍ଭ କଲେ । କିନ୍ତୁ ତାହା ମୁଗୁନି ପଥର ପରି ଟାଣ ଲାଗିଲା । ସେ ସେହି ହସ୍ତୀ-ଦନ୍ତ ଛାଡି ପର୍ଯ୍ୟାୟକ୍ରମେ ଶୁଣ୍ଢ, କାନ, ପାଦ, ଲାଞ୍ଜ ଇତ୍ୟାଦି ଖାଇ-ବାକୁ ଚେଷ୍ଟାକଲେ କିନ୍ତୁ କୌଣସି ଅଂଶରେ ତାଙ୍କ ଦାନ୍ତ ପଶିଲା ନାହିଁ । ଅବଶେଷରେ ସେ ହସ୍ତୀର ମଳଦ୍ୱାରକୁ ନିଜ ଦନ୍ତରେ ଆଘାତ କଲେ । ଏହି ଅଂଶଟି ଅନ୍ୟ ଅଂଶ ଅପେକ୍ଷା କୋମଳ ଥିଲା । ତେଣୁ ତାକୁ ଚୋବାଇ ସେ କିଛି ଅଂଶ ଖାଇନେଲେ । ଏହାପରେ ସେ ଦେଖିଲେ, ମଳଦ୍ୱାର ଭିତରେ ଆହୁରି କୋମଳ ମାଂସ ଅଛି ।

ବୋଧିସତ୍ତ୍ୱ ମନେ ମନେ ଭାବିଲେ, ମୁଁ ବର୍ତ୍ତମାନ ଉପଯୁକ୍ତ ଅଂଶରେ ମୁହଁ ଦେଇଛି । ତେଣୁ ମନ ଆନନ୍ଦରେ ସେ ସେହି ଅଂଶର ମାଂସ ଖାଇ ତୃପ୍ତିଲାଭ କରିବାକୁ ଲାଗିଲେ । ଅବଶେଷରେ ସେ ମଳ-ଦ୍ୱାର ଦେଇ ହସ୍ତୀର ଉଦର ଭିତରେ ପ୍ରବେଶ କଲେ । ପେଟ ଭିତରୁ ପ୍ରଚୁର ରକ୍ତ, ମାଂସ, ଅନ୍ତ ପ୍ରଭୃତି ଖାଇଲେ । ଏହିପରି ଭାବରେ ହସ୍ତୀର ଉଦର ମଧ୍ୟରେ ରହି ଆଉ ବାହାରକୁ ବାହାରିବାର

ଆବଶ୍ୟକତା ଉପଲବ୍ଧି କଲେ ନାହିଁ । ମୃତ ହସ୍ତୀର ମାଂସରେ କ୍ଷୁଧା ଓ ରକ୍ତରେ ତୃଷା ନିବାରଣ କରି ସେ ଆନନ୍ଦ ଲାଭ କଲେ । ରହିରେ ହସ୍ତୀର ବିରାଟ ଉଦର ମଧ୍ୟରେ ନିଦ୍ରା ଗଲେ । ସେ ଭାବିଲେ, ଭାଗ୍ୟ-ବଳରୁ ମୋତେ କେବଳ ମିଷ୍ଟ ଆହାର ଓ ପାନୀୟ ନୁହେଁ, ରହିବା ପାଇଁ ସୁନ୍ଦର ବାସସ୍ଥାନ ମଧ୍ୟ ପ୍ରାପ୍ତି ହେଲା । ମାଟି ଗାତ ଅପେକ୍ଷା ଏହା ସୁନ୍ଦର ଓ ନିରାପଦ ସ୍ଥାନ ଅଟେ । ଏପରି ଦିବ୍ୟ ସୁନ୍ଦର ସ୍ଥାନ ଛାଡି ଅନ୍ୟତ୍ର ଯିବି କାହିଁକି ? ଏହା ବିଚାର କରି ବହୁଦିନ ପର୍ଯ୍ୟନ୍ତ ସେ ସେହି ହସ୍ତୀ-ଉଦରରେ ବସବାସ କରି ଅଟକିଗଲେ ।

କ୍ରମେ ଗ୍ରୀଷ୍ମ ଋତୁ ଆସି ଉପସ୍ଥିତ ହେଲା । ସୂର୍ଯ୍ୟ ତାପରେ ସମଗ୍ର ଅଂଚଳ ଉତ୍ତପ୍ତ ହେଲା । କିନ୍ତୁ ବୋଧିସତ୍ତ୍ୱ ହସ୍ତୀର ଉଦର ମଧ୍ୟରେ ଥିବାରୁ ପ୍ରଚଣ୍ଡ ସୂର୍ଯ୍ୟତାପରୁ ରକ୍ଷା ପାଇଗଲେ ଓ ନିଜକୁ ଭାଗ୍ୟବାନ ମନେ କଲେ ।

କିନ୍ତୁ ସୂର୍ଯ୍ୟଙ୍କର ପ୍ରଖର ଉତ୍ତାପରେ ମୃତହସ୍ତୀର ଚର୍ମ ଶୁଖି ସଂକୁଚିତ ହେବାକୁ ଲାଗିଲା । ଦିନେ ବୋଧିସତ୍ତ୍ୱ ଲକ୍ଷ୍ୟ କଲେ, ସେ ଯେଉଁ ମଳଦ୍ୱାର ବାଟରେ ହସ୍ତୀର ଉଦର ମଧ୍ୟରେ ପ୍ରବେଶ କରି-ଥିଲେ ତାହା କ୍ରମେ ସଙ୍କୁଚିତ ହୋଇ ସଂପୂର୍ଣ୍ଣ ବନ୍ଦ ହୋଇ ଯାଇଛି । ଉଦରର ଭିତର ପାର୍ଶ୍ୱ ସଂପୂର୍ଣ୍ଣ ଅନ୍ଧକାର ହୋଇ ଉଠିଛି । ଇତି ପୂର୍ବରୁ ମଳଦ୍ୱାରର ରାସ୍ତା ଦେଇ ବାହାରୁ ଆଲୋକ ଓ ପବନ ପ୍ରବେଶ କରୁଥିଲା । ତେଣୁ ବୋଧିସତ୍ତ୍ୱ କୌଣସି ଅସୁବିଧାର ସମ୍ମୁଖୀନ ହେଉ-ନ ଥିଲେ । କିନ୍ତୁ ବର୍ତ୍ତମାନ ପ୍ରଚଣ୍ଡ ରୌଦ୍ରରେ ମୃତହସ୍ତୀର ସର୍ବାଙ୍ଗ ଶୁଷ୍କ ଓ ସଙ୍କୁଚିତ ହେଲା । ବୋଧିସତ୍ତ୍ୱ ହସ୍ତୀର ଉଦର ମଧ୍ୟରେ ଘନ ଅନ୍ଧକାର ଭିତରେ ଆବଦ୍ଧ ହୋଇ ରହିଲେ ।

ଏହି ଘନୀଭୂତ ଅନ୍ଧକାର ମଧ୍ୟରେ ସେ ପ୍ରଥମ ଅବସ୍ଥାରେ ଅଣ୍ଡାଳି ଅଣ୍ଡାଳି ମୃତହସ୍ତୀର ଉଦରରୁ କିଛି କିଛି ଶୁଷ୍କ ମାଂସ ଭକ୍ଷଣ କଲେ । କିନ୍ତୁ ରକ୍ତ ସବୁ ଶୁଖି ଜମାଟ ବାନ୍ଧି ଯାଇଥିବାରୁ ସେ ତୃଷାରେ ଅଧୀର ହେଲେ ଓ ଅସହ୍ୟ ଯନ୍ତ୍ରଣା ଭୋଗ କଲେ । ବନ୍ଦୀଶାଳାରୁ ମୁକ୍ତି ପାଇବାକୁ ପ୍ରାଣାନ୍ତକ ଉଦ୍ୟମ କରି ବିଫଳ ହେଲେ ।

ଉଦର ମଧ୍ୟରେ ପ୍ରବେଶ କଲାବେଳେ ସେ ଯେତିକି ଆନନ୍ଦ ଲାଭ କରିଥିଲେ, ବର୍ତ୍ତମାନ ସେହି ଆନନ୍ଦ ତୁଳନାରେ ଶତଗୁଣରୁ ଅଧିକ ଦୁଃଖ ଜାତ ହେଲା । ସେ ନିଜକୁ ଅତ୍ୟନ୍ତ ଅସହାୟ ମନେ କଲେ ।

ସୌଭାଗ୍ୟବଶତଃ ଠିକ୍ ଏହି ସମୟରେ ଅସରାଏ ବର୍ଷା ହେଲା । ହସ୍ତୀର ମୃତ ଓ ଶୁଷ୍କ ପିଣ୍ଡ ବର୍ଷା ଖାଇ ଫୁଲି ଉଠିଲା । ବର୍ତ୍ତମାନ ସେ ଯେଉଁ ମଳଦ୍ୱାର ଦେଇ ହସ୍ତୀ ଗର୍ଭକୁ ପ୍ରବେଶ କରିଥିଲେ, ବର୍ଷା ପାଇ ତାହା ସାମାନ୍ୟ ସଂପ୍ରସାରିତ ହେଲା ଓ ଛିଦ୍ର ମଧ୍ୟ ଦେଇ ସୂର୍ଯ୍ୟାଲୋକ ଝରି ଆସିଲା ।

ବୋଧିସତ୍ତ୍ୱ ଆଶାର ଏହି କ୍ଷୀଣାଲୋକ ଦର୍ଶନ କରି ଆନନ୍ଦବିହ୍ୱଳ କଣ୍ଠରେ ପ୍ରକାଶ କଲେ, ଭଗବାନ ମୋତେ ଏତେଦିନକେ ରକ୍ଷା କଲେ । ଏହା କହି ସେ ଶରୀରର ସମସ୍ତ ଶକ୍ତି ଖଟାଇ ସେହି ଛିଦ୍ରରେ ପ୍ରଥମେ ମସ୍ତକ ଗଳାଇ ଆସ୍ତେ ଆସ୍ତେ ବାହାରକୁ ଚାଲି ଆସିଲେ । କିନ୍ତୁ ଏତଦ୍ଦ୍ୱାରା ତାଙ୍କର ସମଗ୍ର ଶରୀର ଲୋମଶୂନ୍ୟ ହେଲା ।

ସେ ଆଉ ମୃତହସ୍ତୀର ଶବ ପାଖରେ ନ ରହି ଦୌଡ଼ିବାକୁ ଲାଗିଲେ । କିଛି ସମୟ ଦୌଡ଼ିବା ପରେ ସେ ଗୋଟିଏ ସ୍ଥାନରେ ବସି କ୍ଲାନ୍ତି ଦୂରକଲେ ଓ ନିଜ ଶରୀରକୁ ନିରୀକ୍ଷଣ କଲେ । ତାଙ୍କର ଲୋମ-ହୀନ ଶରୀର ଦେଖି ନିଜ ପ୍ରତି ଦୟା ଆସିଲା । ସେ ମନକୁ ମନ କହିହେଲେ, ମୁଁ ପ୍ରଥମେ ଏପରି ନ ଥିଲି । ମୋ ଦେହ ଲୋମଶ ଓ ଶ୍ରୀଯୁକ୍ତ ଥିଲା । ଲୋଭରେ ପଡ଼ି ମୁଁ ମୃତହସ୍ତୀର ଶରୀର ଉପରେ ଥିବା ମାଂସ ଭକ୍ଷଣ କରି ସନ୍ତୁଷ୍ଟ ନ ହୋଇ, ମଳଦ୍ୱାର ଦେଇ ତାର ଉଦର ମଧ୍ୟରେ ପ୍ରବେଶ କଲି । ଭାଗ୍ୟ ଭଲ, ମୃତ୍ୟୁମୁଖରୁ କୌଣସିମତେ ଜୀବନ ରକ୍ଷାକରି ଚାଲିଆସିଲି । କେବଳ ଅତ୍ୟଧିକ ଲୋଭ ହେତୁ ମୋର ଏପ୍ରକାର ଦୁର୍ଦ୍ଦଶା ଘଟିଲା । ଭବିଷ୍ୟତରେ ଲୋଭର ବଶବର୍ତ୍ତୀ ହୋଇ ମୃତହସ୍ତୀର ଉଦର ମଧ୍ୟରେ ପ୍ରବେଶ କଲା ପରି ଦୁଷ୍କର୍ମ କରିବି ନାହିଁ ।

ସେହି ଦିନଠାରୁ ସେ ଲୋଭ ତ୍ୟାଗ କଲେ ଓ ସୁଖରେ ବାସ କରିବାକୁ ଲାଗିଲେ ।

( ଶୃଗାଳ ଜାତକ )






ରାଜା ବ୍ରହ୍ମଦତ୍ତ ବାରଣସୀରେ ରାଜୁତି କଲା ସମୟରେ, ବୋଧିସତ୍ତ୍ୱ ସେହି ରାଜ୍ୟର ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଯଥା ସମୟରେ ବିଦ୍ୟାପୀଠ–ତକ୍ଷଶୀଳାକୁ ଯାଇ ସେଠାରେ ଉପଯୁକ୍ତ ଗୁରୁଙ୍କ ନିକଟରୁ ବିଦ୍ୟାଭ୍ୟାସ କଲେ ଓ ପାଣ୍ଡିତ୍ୟ ଅର୍ଜନ କଲେ । ଏହା ପରେ ସେ ସ୍ୱଗୃହକୁ ଫେରି ଆସି ସନ୍ନ୍ୟାସ ଗ୍ରହଣ କରିଥିଲେ ଓ ଏକ ପଦ୍ମ ପୁଷ୍କରିଣୀ ନିକଟରେ କୁଟୀର ନିର୍ମାଣ କରି ବସବାସ କରିବାକୁ ଲାଗିଲେ ।

ଦିନେ ବୋଧିସତ୍ତ୍ୱ ପୁଷ୍କରିଣୀର ଗୋଟିଏ ପ୍ରସ୍ଫୁଟିତ ପଦ୍ମ ପୁଷ୍ପ ସମ୍ମୁଖରେ ଛିଡ଼ା ହୋଇ ସୁଗନ୍ଧ ଆଘ୍ରାଣ କରୁଅଛନ୍ତି, ପୁଷ୍କରିଣୀର ଅଧିଷ୍ଠାତ୍ରୀ ଦେବୀ ବୋଧିସତ୍ତ୍ୱଙ୍କୁ ତହିଁରୁ ନିବର୍ତ୍ତାଇବାକୁ ଯାଇ କହିଲେ, ହେ ସନ୍ନ୍ୟାସି ! ତୁମେ ଏପରି ଅନ୍ୟାୟ କାର୍ଯ୍ୟ କାହିଁକି କରୁଅଛ ? ଏ ପୁଷ୍କରିଣୀ ତୁମର ନୁହେଁ । ତେଣୁ ପ୍ରସ୍ଫୁଟିତ ପୁଷ୍ପ ଆଘ୍ରାଣ କରିବା ଚୌର୍ଯ୍ୟବୃତ୍ତି ସଙ୍ଗେ ସମାନ ହେବ । ଯଦିଓ ତୁମେ ପଦ୍ମପୁଷ୍ପର ସୁଗନ୍ଧି ମାତ୍ର ଆଘ୍ରାଣ କରିଛ, ତଥାପି ଏହା ଚୌର୍ଯ୍ୟବୃତ୍ତି ସଙ୍ଗେ ସମାନ ହେବ ।

ଏହା ଶୁଣି ବୋଧିସତ୍ତ୍ୱ ଉତ୍ତର ଦେଲେ, ହେ ଦେବି ! ମୁଁ ପୁଷ୍କରିଣୀରୁ ଫୁଲ ଛିଣ୍ଡାଇ ନହିଁ କି ନେଇ ଯାଇ ନାହିଁ । ମୁଁ ଦୂରରେ ଛିଡ଼ା ହୋଇ କେବଳ ସୁଗନ୍ଧ ଆଘ୍ରାଣ କଲି । ଏଥିରେ ମୁଁ ଚୌର୍ଯ୍ୟ ଅପବାଦ ପାଇବି କାହିଁକି ?

ଠିକ୍ ଏତିକିବେଳେ ଜଣେ ଲୋକ ଆସି ପୁଷ୍କରିଣୀରେ ପ୍ରବେଶ କଲା ଓ ପଦ୍ମବୃକ୍ଷ ଉପାଡି ମୂଳ ସଂଗ୍ରହ କଲା ।

ଏହା ଦେଖି ବୋଧିସତ୍ତ୍ୱ ପ୍ରଶ୍ନ କଲେ, ମୁଁ ଦୂରରେ ଛିଡ଼ା ହୋଇ ପଦ୍ମଫୁଲ ସୁଗନ୍ଧ ଆଘ୍ରାଣ କଲି ବୋଲି ମୋତେ ଚୌର୍ଯ୍ୟ ଅପବାଦ ଦେଲ । କିନ୍ତୁ ହେ ଦେବି ! ଏଇ ଲୋକଟିକୁ ଦେଖ । ସେ

ପଦ୍ମଗଛ ନଷ୍ଟ କରି ମୂଳ ଉପାଡ଼ି ନେଉଛି । ତାହାକୁ କାହିଁକି କିଛି ହେଲେ କହୁ ନାହଁ ?

ଦେବୀ ଏହା ଶୁଣି ପ୍ରକାଶ କଲେ, ଏହି ଲୋକର କାର୍ଯ୍ୟ ଯେ ଅତ୍ୟନ୍ତ ଘୃଣ୍ୟ ଓ ଦୋଷାବହ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦୁଷ୍ଟ ଲୋକମାନେ କାହାରି ଉପଦେଶ ଶୁଣିବା ଅଭ୍ୟାସରେ ନ ଥାନ୍ତି । ସେମାନଙ୍କୁ ଭଲ କଥା ଶୁଣାଇ ଲାଭ ନାହିଁ । କିନ୍ତୁ ତୁମପରି ଧାର୍ମିକ ଲୋକଙ୍କୁ ଉପଦେଶ ଦେବା କର୍ତ୍ତବ୍ୟ ବୋଲି ମୁଁ ବିବେଚନା କରେ । ସ୍ୱଚ୍ଛ ଆକାଶରେ କଳାମେଘଖଣ୍ଡ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ତୁମପରି ଧାର୍ମିକ ଲୋକଙ୍କର ପବିତ୍ର ଜୀବନରେ ସାମାନ୍ୟତମ କାଳିମା ଦେଖି ମୁଁ ତୁମକୁ ଉପଦେଶ ଦେବାକୁ ସ୍ଥିର କଲି ।

ବୋଧିସତ୍ତ୍ୱ ଦେବୀଙ୍କର ଉଦ୍ଦେଶ୍ୟ ହୃଦୟଙ୍ଗମ କରି ନିତାନ୍ତ ଅନୁତପ୍ତ ଓ ଲଜ୍ଜିତ ହୋଇ କହିଲେ, ଆପଣଙ୍କ କଥାର ମର୍ମ ମୁଁ ବୁଝିଲି । ବିନାନୁମତିରେ ଫୁଲର ସୁଗନ୍ଧ ଆଘ୍ରାଣ କରି ଥିବା ହେତୁ ମୁଁ ଦୋଷୀ ମନେ କରୁଅଛି । ଏହା ଏକ ପ୍ରକାର ଚୌର୍ଯ୍ୟ ଅପରାଧ ବୋଲି ସ୍ୱୀକାର କରୁଅଛି । ଆପଣ ଦୟାକରି ମୋତେ ଏ ସଂପର୍କରେ ସତର୍କ କରି ଦେଲେ । ଭବିଷ୍ୟତରେ ଯଦି କେବେ ଏପ୍ରକାର ଅନ୍ୟାୟ କାର୍ଯ୍ୟ କରୁଥିବା ଦେଖନ୍ତି, ମୋତେ ସାବଧାନ କରି ଦେବେ ବୋଲି ଅନୁରୋଧ କରୁଅଛି ।

ଦେବୀ ଏହା ଶୁଣି ଉତ୍ତର ଦେଲେ, ତୁମର ଭଲ ମନ୍ଦ କାର୍ଯ୍ୟର ବିବେଚନା କରି ତୁମକୁ ସତର୍କ କରିଦେବାକୁ ହୁଏତ ମୁଁ ତୁମ ସମ୍ମୁଖରେ ସର୍ବଦା ଉପସ୍ଥିତ ରହିପାରିବି ନାହିଁ । କିନ୍ତୁ ମୋର ବିଶ୍ୱାସ ଭଲ ମନ୍ଦ ବିବେଚନା କରି ତୁମେ ଉତ୍ତମ ମାର୍ଗରେ ଗତି କରିବାରେ ସମର୍ଥ ହେବ ।

ଏହା କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ ।

ବୋଧିସତ୍ତ୍ୱ ଏହାପରେ ନିଜ କାର୍ଯ୍ୟ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖି ଚଳିଲେ ଓ ଅବଶେଷରେ ସଦ୍‌ଗତି ଲାଭ କଲେ ।

(ଭୀଷ୍ମ ପୁଷ୍ପ ଜାତକ)






ଏକଦା ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜୁତି କଲାବେଳେ ବୋଧିସତ୍ତ୍ୱ ଏକ ଶୃଗାଳ ଜନ୍ମଗ୍ରହଣ କରି ଶ୍ମଶାନରେ ବାସ କରୁଥିଲେ । ଶ୍ମଶାନରେ ବାସ କରୁଥିବା ଶୃଗାଳମାନଙ୍କର ସେ ରାଜା ଥିଲେ ।

ସେ ସମୟରେ ରାଜଗୃହରେ ଏକ ବିରାଟ ମେଳାର ଆୟୋଜନ ହେଲା । ଖାଦ୍ୟ ପାନୀୟର ଯଥେଷ୍ଟ ବ୍ୟବସ୍ଥା ହୋଇଥିଲା । ସେଇଠି ମଦର ସୁଅ ଛୁଟିଲା । ମେଳାରେ ଜମା ହୋଇଥିବା ସହସ୍ର ସହସ୍ର ଲୋକ ମଦ ଓ ମାଂସ ଖାଇ ମଉଜ କଲେ ।

ସେହି ମେଳାରେ ରାଜଗୃହର ଦଳେ ଲୋକ ସୁନ୍ଦର ବେଶ ପୋଷାକ ପିନ୍ଧି ମଦ ଓ ମାଂସ ଖାଇ ମାତାଲ ଅବସ୍ଥାରେ ଏଣେ ତେଣେ ବୁଲି ମଉଜ କଲେ । ରାତି ଅଧ ବେଳକୁ ସେମାନେ ଦେଖିଲେ, ପିଇବା ପାଇଁ ପ୍ରଚୁର ମଦ୍ୟ ଥିଲେ ମଧ୍ୟ ଖାଇବାକୁ ଆଉ ମାଂସ ନାହିଁ ।

ଏହା ଦେଖି ସେମାନଙ୍କ ଭିତରୁ ଜଣେ ଲୋକ କହିଲା, ମାଂସ ନ ଥିଲେ ମଉଜ କଣ ? ଯେ କୌଣସି ମତେ ମାଂସର ଯୋଗାଡ କରିବାକୁ ହେବ ।

କିନ୍ତୁ ମାଂସ ଯୋଗାଡ଼ ହେବ କେମିତି ? ରାତିଅଧରେ ବା' ମାଂସ ମିଳିବ କେଉଁଠୁ ?

ପ୍ରଥମ ବ୍ୟକ୍ତି ଜଣକ ବାହାଦୂରୀ ଦେଖାଇ କହିଲା, ମୁଁ ଯେଉଁଠି ଥିବି, ସେଇଠି କଣ ମାଂସର ଅଭାବ ହେବ ? ମୁଁ ଯାଉଛି, ଅଳ୍ପ ସମୟ ଭିତରେ ଶ୍ମଶାନରୁ ମାଂସ ଯୋଗାଡ କରି ନେଇ ଆସିବି ।

କିନ୍ତୁ ଶ୍ମଶାନରେ ଶିକାର ମିଳିବ କେମିତି ? ଅନ୍ୟମାନେ ପ୍ରଶ୍ନ କଲେ ।

ସେହି ବ୍ୟକ୍ତି ଜଣକ ଉତ୍ତର ଦେଲା, ବୁଦ୍ଧି ଥିଲେ ସବୁ ସମ୍ଭବ ହେବ । ଶ୍ମଶାନରେ ଶବ ଖାଇବା ଉଦ୍ଦେଶ୍ୟରେ ଶୃଗାଳମାନେ ଏକାଠି ହୋଇଥିବେ । ଜଣକୁ ମାରି ପାରିଲେ ହେଲା । ତହିଁରୁ ଯଥେଷ୍ଟ ମାଂସ ମିଳିବ । ଏହା କହି ହାତରେ ଗୋଟିଏ ଠେଙ୍ଗାନେଇ ସେ ଶ୍ମଶାନ ଅଭିମୁଖରେ ଯାତ୍ରା କଲା ।

ଶ୍ମଶାନରେ ପହୁଞ୍ଚି ସେହି ଲୋକଟି ଶବ ପରି ନିଶ୍ଚେଷ୍ଟ ଅବସ୍ଥାରେ ପଡ଼ି ରହିଲା । ହାତରେ ତାର ଠେଙ୍ଗା ଥାଏ । ଭାବିଲା, ତାକୁ ଶବ ମନେକରି ଶୃଗାଳଦଳ ତା ପାଖକୁ ଆସିବେ । ଠିକ୍ ସେତିକି-ବେଳେ ସେ ସେମାନଙ୍କ ମଧ୍ୟରୁ ଜଣକୁ ଠେଙ୍ଗାରେ ପିଟି ମାରି ପକାଇବ । ତାରି ମାଂସରେ ମେଳା ମଉଜ ହେବ ।

କିଛି ସମୟ ପରେ ବୋଧିସତ୍ତ୍ୱ ତାଙ୍କ ଅନୁଚରମାନଙ୍କ ସଙ୍ଗରେ ସେହି ରାସ୍ତାରେ ଯାଉଥିଲେ । ଶ୍ମଶାନ ମଧ୍ୟରେ ଶବ-ତୁଲ୍ୟ ଏକ ମଣିଷ ଦେଖି ଦୂରରେ ଥାଇ ତାକୁ ଲକ୍ଷ୍ୟକଲେ । ତାଙ୍କର ଧାରଣା ହେଲା ଯେ, ସେଇଟି ପ୍ରକୃତରେ ଶବ ନୁହେଁ । ଗୋଟିଏ ଚତୁର-ମନ୍ୟ-ଲୋକ ମନ୍ଦ ଉଦ୍ଦେଶ୍ୟରେ ସେଇଠି ପଡ଼ି ରହିଛି । ପାଖରେ ତାର ଠେଙ୍ଗାଟିଏ ପଡ଼ିଥିବା ଦେଖି ବୋଧିସତ୍ତ୍ୱଙ୍କର ସନ୍ଦେହ ଆହୁରି ବଢ଼ିଗଲା । ପ୍ରକୃତ ବିଷୟ ପରୀକ୍ଷା କରି ଦେଖିବା ନିମନ୍ତେ, ସେ ଅତି ସାବଧାନତା ସହକାରେ ଦୂରରେ ଥାଇ ଲମ୍ବ ଭାବରେ ପଡ଼ିଥିବା ଠେଙ୍ଗାର ଶେଷାଂଶକୁ ନିଜ ଦନ୍ତରେ କାମୁଡ଼ି ଭିଡ଼ିବାକୁ ଲାଗିଲେ ।

ଦୁଷ୍ଟ ଲୋକଟି ବୋଧିସତ୍ତ୍ୱଙ୍କ କୌଶଳ ମୋଟେ ହେଲେ ବୁଝି ପାରିଲା ନାହିଁ । ସେ ସେହି ଠେଙ୍ଗାକୁ ଛାଡ଼ି ନ ଦେଇ ଆହୁରି ଜୋର୍‌ରେ ମୁଠେଇ ଧରିଲା ।

ବୋଧିସତ୍ତ୍ୱ ଏଥର ନିଶ୍ଚିତଭାବରେ ବୁଝିଲେ ଯେ, ଲୋକଟି ମୃତ ବ୍ୟକ୍ତିର ଛଳନା କରି କେବଳ ସେମାନଙ୍କର ଅନିଷ୍ଟ ସାଧନ ନିମନ୍ତେ ଶ୍ମଶାନରେ ଶୋଇଛି । ବୋଧହୁଏ ଠେଙ୍ଗା ସାହାଯ୍ୟରେ କୌଣସି ଶୃଗାଳର ପ୍ରାଣହାନୀ କରିବା ଚକ୍ରାନ୍ତରେ ସେ ଲିପ୍ତ ଅଛି ।

ବର୍ତ୍ତମାନ ବୋଧିସତ୍ତ୍ୱ ସେହି ଦୁଷ୍ଟ ଲୋକ ଉଦ୍ଦେଶ୍ୟରେ କହିଲେ, ଆଉ ଛଳନା କାହିଁକି ? ତୁମର ସମସ୍ତ ଷଡ଼ଯନ୍ତ୍ର ଧରା ପଡ଼ି ଯାଇଛି । ଯେଉଁ ଲୋକ ମରି ଯାଇଥାଏ, ହାତର ଠେଙ୍ଗା ନ ଛାଡ଼ିବା ପାଇଁ ଭିଡ଼ା ଓଟରା କରେ ନାହିଁ । ଏଥିରୁ ହିଁ ତୁମର ସମସ୍ତ ଷଡ଼ଯନ୍ତ୍ର ଧରା ପଡ଼ିଲା । ମନେରଖ, ଆଉ ଆମେ ତୁମର ପାଖ ମାଡ଼ୁ ନାହୁଁ ।

ଦୁଷ୍ଟ ଲୋକଟି ତାର ସମସ୍ତ କୌଶଳ ପଦାରେ ପଡ଼ିଯାଇ ଥିବାରୁ ଅତ୍ୟନ୍ତ ଦୁଃଖିତ ହେଲା । ସେ ରାଗରେ ଉଠିପଡ଼ି ବୋଧିସତ୍ତ୍ୱଙ୍କୁ ଲକ୍ଷ୍ୟ କରି ପାଖରେ ଥିବା ଠେଙ୍ଗାକୁ ଜୋର୍‌ରେ ଫିଙ୍ଗିଲା । କିନ୍ତୁ ସେ ଠେଙ୍ଗା ବୋଧିସତ୍ତ୍ୱ ବା ଅନ୍ୟ କୌଣସି ଶୃଗାଳ ଦେହରେ ବାଜିଲା ନାହିଁ ।

ଏହା ଦେଖି ଦୁଷ୍ଟ ଲୋକଟି ବୋଧିସତ୍ତ୍ୱଙ୍କ ଉଦ୍ଦେଶ୍ୟରେ କହିଲା, ତୋ ଭାଗ୍ୟ ଭଲ । ତେଣୁ ମୋ' ହାବୁଡ଼ରୁ ରକ୍ଷା ପାଇଗଲୁ ।

ଏହାଶୁଣି ବୋଧିସତ୍ତ୍ୱ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, କିନ୍ତୁ ତୋର ପାପକର୍ମତକ ଧରା ପଡ଼ି ଯାଇଛି । ତୁ ଧର୍ମଦେବତାଙ୍କ ହାତରୁ ରକ୍ଷା ପାଇ ପାରିବୁ ନାହିଁ । ତୋତେ ନର୍କ ଭୋଗ ଅଛି ।

ଦୁଷ୍ଟ ଲୋକଟି ନିରାଶ ହୋଇ ଖାଲି ହାତରେ ରାଜଗୃହକୁ ଫେରିଗଲା ।

( ଶୃଗାଳ ଜାତକ (ଖ) )






ଏକଦା ଶିବି ରାଜ୍ୟରେ ସେହି 'ଶିବି' ନାମଧେୟ ଜଣେ ରାଜା ରାଜୁତି କରୁଥିଲେ । ସେହି ରାଜ୍ୟର ରାଜଧାନୀ ଥିଲା ଅରିଷ୍ଟପୁର । ବୋଧିସତ୍ତ୍ୱ ଶିବି ରାଜାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରି 'ଶିବି କୁମାର' ନାମରେ ଖ୍ୟାତ ହେଲେ । ବୟଃପ୍ରାପ୍ତ ହେବାରୁ ବିଦ୍ୟାଶିକ୍ଷା ପାଇଁ ସେ ତକ୍ଷଶିଳା ଯାତ୍ରା କଲେ ଓ ଶିକ୍ଷା ସମାପ୍ତି ପରେ ଅରିଷ୍ଟପୁରକୁ ଫେରି ଆସି, ନିଜ ଜ୍ଞାନ ଓ ପାଣ୍ଡିତ୍ୟ ବଳରେ ରାଜ ପ୍ରତିନିଧିରୂପେ ନିଯୁକ୍ତି ଲାଭ କଲେ ।

ପିତାଙ୍କ ମୃତ୍ୟୁ ପରେ ସେ ସିଂହାସନ ଆରୋହଣ କଲେ ଓ ଦେଶରୁ ଅନୀତି ଦୂର କରି ରାଜ୍ୟ ଶାସନର ଦଶ ନୀତି ପାଳନ କଲେ । ଏହା ବ୍ୟତୀତ ସେ ଛଅଟି ଦାନଶାଳା ନିର୍ମାଣ କରିଥିଲେ । ଛଅଟି ଦାନଶାଳା ମଧ୍ୟରୁ ନଗରର ଚାରି ପ୍ରବେଶ ଦ୍ୱାରରେ ଚାରୋଟି, ଗୋଟିଏ ସହରର ମଧ୍ୟସ୍ଥଳୀରେ ଏବଂ ଅନ୍ୟଟି .ନିଜେ ରହୁଥିବା ଗୃହର ଦ୍ୱାର-ଦେଶରେ ଅବସ୍ଥିତ ଥିଲା । ପ୍ରତ୍ୟହ ସେ ଛଅ ହଜାର ମୁଦ୍ରା ବିତରଣ କରୁଥିଲେ । କୃଷ୍ଣପକ୍ଷର ଅଷ୍ଟମୀ ଚତୁର୍ଦ୍ଦଶୀ ଓ ଶୁକ୍ଳପକ୍ଷର ପୂର୍ଣ୍ଣମୀ ଦିନ ସେ ନିଜେ ଦାନଶାଳାରେ ଉପସ୍ଥିତ ରହି ନିଜ ହସ୍ତରେ ଦାନ କରୁଥିଲେ ।

ଥରେ ଏକ ପୂର୍ଣ୍ଣମୀ ତିଥିରେ ସେ ନିଜ ରାଜସିଂହାସନରେ ବସି ମନେ ମନେ ଚିନ୍ତା କଲେ, ମୁଁ ବାହ୍ୟ ଜିନିଷ, ଅର୍ଥାତ ଧନ, ରତ୍ନ ଇତ୍ୟାଦି ଦାନ କରିଛି । ସେପରି ଦାନରେ ଆତ୍ମ ସନ୍ତୋଷ ଆସୁ ନାହିଁ । ତେଣୁ ମୁଁ ମୋ ଭିତରର, ଅର୍ଥାତ ନିଜ ଅଙ୍ଗରୁ କିଛି ଦାନ କରିବି । ଏହା ଚିନ୍ତା କରି ସେ ଶପଥ ନେଲେ ଯେ, ସେ ଦିନ ସେ ଦାନଶାଳାରେ ଉପସ୍ଥିତ ଥିବା ସମୟରେ, ଯିଏ ଯାହା ମାଗିବ ଦାନ କରିବେ । ସେ ମନକୁ ମନ କହି ହେଲେ, ଯଦି ଆଜି କେହି ଆସି ହୃଦୟ ମାଗେ, ତାହା ହେଲେ ତରବାରୀ ସାହାଯ୍ୟରେ ବକ୍ଷ ବିଦୀର୍ଣ୍ଣ କରି ମୁଁ ତାକୁ ମୋର ହୃଦୟ ଦାନ କରିବି । ଯଦି କେହି ଶରୀର ମାଂସ ରକ୍ତ

ମାଗେ, ତାହା ମୁଁ ଅବଶ୍ୟ ଦାନ କରିବି । ଏପରିକି ଯଦି କେହି ମୋତେ ଦାସରୂପେ ତା' ଗୃହକର୍ମ କରିବାକୁ କହେ, ମୁଁ ତା' ଗୃହର ଦାସ ହେବି । ମୋର ଚକ୍ଷୁ ଦୁଇଟି ମଧ୍ୟ ଦାନ କରିବାକୁ ଆଜି ପ୍ରସ୍ତୁତ ହୋଇ ଦାନଶାଳାକୁ ଯିବି ।

ଏହାପରେ ସେ ସୁବାସିତ ଜଳରେ ସ୍ନାନ କରି ଦିବ୍ୟ ଭୋଜନ ସମାପ୍ତ କରିବା ପରେ, ହସ୍ତୀ ପୃଷ୍ଠରେ ଆରୋହଣପୂର୍ବକ ଦାନଶାଳା ଅଭିମୁଖେ ଯାତ୍ରା କଲେ ।

ଦେବରାଜ ଇନ୍ଦ୍ର ସ୍ୱର୍ଗରୁ ଶିବିରାଜାଙ୍କର ଏ ଅଲୌକିକ ଅଭିଳାଷ ଲକ୍ଷ୍ୟ କରୁଥିଲେ । ସେ ମନେ ମନେ ଭାବିଲେ, ଆଜି ରାଜା ନିଜର ଚକ୍ଷୁ ଦାନ କରିବା ସକାଶେ ସଙ୍କଳ୍ପବଦ୍ଧ ହୋଇଛନ୍ତି । ତେଣୁ ତାଙ୍କୁ ପରୀକ୍ଷା କରି ଦେଖିବା ନିମନ୍ତେ ମାୟା ବଳରେ ଅନ୍ଧ ବୃଦ୍ଧ ବ୍ରାହ୍ମଣ ବେଶ ଧାରଣ କରି, ଦାନଶାଳା ସମ୍ମୁଖରେ ଉପସ୍ଥିତ ହେଲେ, ଏବଂ କହିଲେ ମହାରାଜାଙ୍କର ଜୟ ହେଉ ।

ଶିବିରାଜା ଅନ୍ଧ ବୃଦ୍ଧ ବ୍ରାହ୍ମଣଙ୍କୁ ଆଗମନର କାରଣ ପଚାରିବାରୁ ବ୍ରାହ୍ମଣ କହିଲେ, ସାରା ସଂସାରରେ ଆପଣଙ୍କ ଦାନ ପୁଣ୍ୟର ପଟାନ୍ତର ନାହିଁ । ମୁଁ ଅନ୍ଧ ଅଟେ । କିନ୍ତୁ ଆପଣଙ୍କର ଦୁଇଟି ଚକ୍ଷୁ ଅଛି । ଆପଣ ମୋତେ ଗୋଟିଏ ଚକ୍ଷୁ ଦାନ କରନ୍ତୁ ।

ଶିବି ଦାନଶାଳାକୁ ଆସିବା ପୂର୍ବରୁ କରିଥିବା ସଙ୍କଳ୍ପ କଥା ସ୍ମରଣ କରି ନିଜକୁ ଭାଗ୍ୟବାନ ମନେ କଲେ । ଭାବିଲେ, ତାଙ୍କ ମନୋବାଂଛା ସଫଳ ହେବାକୁ ଯାଉଛି । ସଂସାରରେ ଏ ପର୍ଯ୍ୟନ୍ତ କେହି କରି ପାରି ନଥିବା, ଚକ୍ଷୁ ପରି ଅମୂଲ୍ୟ ପଦାର୍ଥ ଦାନ କରିବାକୁ ସେ ନିଷ୍ପତ୍ତି କଲେ । ବ୍ରାହ୍ମଣଙ୍କୁ ପ୍ରଶ୍ନ କଲେ, ହେ ବ୍ରାହ୍ମଣ ! ତୁମକୁ ଏଠାକୁ ଆସି ଦାନ ମାଗିବାକୁ କିଏ ଉପଦେଶ ଦେଲା ? କାହା କଥାରେ ତୁମେ ମୋ' ନିକଟରେ ଆଖି ପରି ଏକ ଅମୂଲ୍ୟ ଦାନ ମାଗିଲ ?

ବ୍ରାହ୍ମଣ କହିଲେ, ଦେବରାଜ ଇନ୍ଦ୍ର ମୋତେ ଏ ପ୍ରକାର ପରାମର୍ଶ ଦେଇ ପଠାଇ ଅଛନ୍ତି । ସମସ୍ତ ପ୍ରକାର ଦାନ ମଧ୍ୟରୁ ଚକ୍ଷୁଦାନ ସର୍ବୋତ୍କୃଷ୍ଟ ଅଟେ । କେହି କାହାକୁ ଏପ୍ରକାର ଦାନ କରିଥିବା କଥା ଜଣା ନାହିଁ । ମୋତେ ଆପଣ ସେହି ଅମୂଲ୍ୟ ଦାନ କରନ୍ତୁ ।

ଶିବି ରାଜା କହିଲେ, ହେ ବ୍ରାହ୍ମଣ ! ତୁମର ମନୋବାଂଛା ଅବଶ୍ୟ ପୂରଣ କରିବି । ତୁମେ ଗୋଟିଏ ଚକ୍ଷୁଦାନ ମାଗିଛ । କିନ୍ତୁ ମୁଁ ତୁମକୁ ମୋର ଦୁଇଟିଯାକ ଚକ୍ଷୁ ଦାନ କରିବି । ଏତଦ୍ଵାରା ତୁମେ ସଂପୂର୍ଣ୍ଣ ଦୃଷ୍ଟିଶକ୍ତି ଲାଭ କରିପାରିବ ।

ଦାନଶାଳା ଭିତରେ ରାଜା ଶିବି ବ୍ରାହ୍ମଣଙ୍କୁ ତାଙ୍କର ଚକ୍ଷୁ ଦାନ ନକରି, ତାଙ୍କୁ ନଗର ଭିତରକୁ ନେଇଗଲେ । ସେଇଠି ସେ ସିଂହାସନ

ଉପରେ ବସି ରାଜବୈଦ୍ୟ ଯୀବକଙ୍କୁ ଡକାଇ ପଠାଇଲେ ଏବଂ ନିଜର ଚକ୍ଷୁ ଦୁଇଟି କାଢି ଅନ୍ଧ ବ୍ରାହ୍ମଣଙ୍କୁ ଦେବାକୁ କହିଲେ ।

ରାଜା ଜଣେ ଅନ୍ଧ ବୃଦ୍ଧ ବ୍ରାହ୍ମଣଙ୍କୁ ଚକ୍ଷୁଦାନ କରୁଥିବା ସମ୍ବାଦ ନଗରସାରା ବିଜୁଳି ପରି ପ୍ରସାରିତ ହୋଇଗଲା । ଏ ସମ୍ବାଦ ଶୁଣି ରାଜ୍ୟର ସେନାପତି, ରାଜକର୍ମଚାରୀ, ରାଜଭକ୍ତ ପ୍ରଜାବୃନ୍ଦ ତଥା ଅନ୍ତଃପୁର ରମଣୀମାନେ ରାଜାଙ୍କୁ ବେଢିଯାଇ ପ୍ରାର୍ଥନା କଲେ, ହେ ମହାରାଜା ! ଆପଣ ଆପଣଙ୍କ ଚକ୍ଷୁଦାନ କରନ୍ତୁ ନାହିଁ । ଚକ୍ଷୁ ପରିବର୍ତ୍ତେ ଅର୍ଥ ମଣି-ମାଣିକ୍ୟ, ରାଜ୍ୟର ଅମୂଲ୍ୟ ପଦାର୍ଥସବୁ ଦାନ କରି ଦିଅନ୍ତୁ । ଏଥିରେ ଆମେ ଆପତ୍ତି କରିବୁ ନାହିଁ । ଆପଣ ଚକ୍ଷୁଦାନ କରିବା ଫଳରେ ଆମେ ସମସ୍ତେ ଅନାଥ ଓ ନିରାଶ୍ରୟ ହୋଇଯିବୁ ।

ଏହା ଶୁଣି ରାଜା କହିଲେ, ବ୍ରାହ୍ମଣ ଚକ୍ଷୁଦାନ ମାଗିଥିଲେ । ମୁଁ ତାଙ୍କୁ ତାହା ଦାନ କରିବାକୁ ଶପଥ କରିଅଛି । ସେ ଚକ୍ଷୁ ପରିବର୍ତ୍ତେ ଆଉ କିଛି ମାଗି ନାହାନ୍ତି । ଯିଏ ଯାହା ଚାହେଁ ନାହିଁ, ତାକୁ ତାହା ଦେବାରେ କୌଣସି ଫଳ ଲାଭ ହେବ ନାହିଁ । ମଣିଷ ନିଜ ପ୍ରତିଜ୍ଞା ପୂରଣ ନ କଲେ ଯମାଳୟରେ ଦଣ୍ଡିତ ହୋଇଥାଏ ।

ରାଜ କର୍ମଚାରୀମାନେ କହିଲେ, ଦୀର୍ଘ ଜୀବନ, ସୌନ୍ଦର୍ଯ୍ୟ, ଆନନ୍ଦ ଓ ଶକ୍ତି ଲାଭ ପାଇଁ ସାଧାରଣତଃ ଦାନ କରାଯାଇ ଥାଏ । କିନ୍ତୁ ମହାରାଜ ଶିବିଙ୍କର ଏ ସମସ୍ତ ଅଭାବ ନାହିଁ । ଇହ ଜନ୍ମରେ ସବୁ ପାଇଛନ୍ତି । ପରଜନ୍ମ ସକାଶେ ଚକ୍ଷୁଦାନ କରିବା ଉଚିତ ହେବ କି ?

ରାଜା ଉତ୍ତର ଦେଲେ, ଯଶ, ସନ୍ତାନ, ସମ୍ପଦ ବା ରାଜ୍ୟଲାଭ ମୋର ଏ ଦାନର ଲକ୍ଷ୍ୟ ନୁହେଁ । ମହାପୁରୁଷମାନେ ଦାନ ଧର୍ମ କରିବାକୁ ଉପଦେଶ ଦେଇ ଯାଇଅଛନ୍ତି । ତଦନୁଯାୟୀ ମୁଁ ଦାନ କରୁଅଛି ।

ରାଜାଙ୍କ ମୁଖରୁ ଏ ପ୍ରକାର ଉତ୍ତର ଶୁଣି ସମସ୍ତେ ନୀରବ ହେଲେ ।

ଏହାପରେ ରାଜା ଯୀବକଙ୍କୁ କହିଲେ, ହେ ଯୀବକ ! ତୁମେ ମୋର ବନ୍ଧୁ ଓ ସଖା ଅଟ । ବର୍ତ୍ତମାନ ମୋର ଅଭିଷ୍ଟ ସିଦ୍ଧିରେ ସହାୟକ ହୁଅ । ମୋର ଚକ୍ଷୁ ଦୁଇଟି ବାହାର କରି ଅନ୍ଧ ବ୍ରାହ୍ମଣଙ୍କୁ ଦିଅ ।

ଏହା ଶୁଣି ଯୀବକ କହିଲେ, ମହାରାଜ ! ଆଉଥରେ ବିଚାର କରି ଦେଖନ୍ତୁ । ନିଜର ଚକ୍ଷୁ ଦାନ କରିବା ସହଜ କଥା ନୁହେଁ ।

ମହାରାଜ ଯୀବକଙ୍କୁ କହିଲେ, ମୁଁ ଯଥେଷ୍ଟ ଚିନ୍ତା କରିଛି ଯୀବକ । କଥାବାର୍ତ୍ତା କରି କାଳକ୍ଷେପଣ କର ନାହିଁ ।

ଯୀବକ ଏହାପରେ ଆଉ କିଛି ନ କହି, ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେଲେ । ସେ ରାଜାଙ୍କର ଚକ୍ଷୁକୁ ଖୋଲି ବାହାର କରିବା ପରିବର୍ତ୍ତେ, ଏକ ସ୍ୱତନ୍ତ୍ର ଅଞ୍ଜନ ପ୍ରସ୍ତୁତ କରି ରାଜାଙ୍କର ଦକ୍ଷିଣ ଆଖିରେ ପ୍ରୟୋଗ କଲେ । ଏତଦ୍ଦ୍ୱାରା ରାଜାଙ୍କର ଡାହାଣ ଚକ୍ଷୁ ଘୂରିବାକୁ ଲାଗିଲା ଓ ସେ ତୀବ୍ର ଯନ୍ତ୍ରଣା ଅନୁଭବ କଲେ । ଠିକ୍ ଏତିକିବେଳେ ଯୀବକ କହିଲେ, ଆଉ ଥରେ ଭାବି ଦେଖନ୍ତୁ ମହାରାଜ ! ବର୍ତ୍ତମାନ ମଧ୍ୟ ମୁଁ ଆପଣଙ୍କ ଚକ୍ଷୁ-ଯନ୍ତ୍ରଣା ଦୂର କରି ତାକୁ ଯଥାସ୍ଥାନରେ ସ୍ଥାପନ କରି ପାରିବି ।

ରାଜା ତଥାପି କହିଲେ, ତୁମେ ତୁମ କାର୍ଯ୍ୟ ସମ୍ପାଦନ କର ଯୀବକ । କାଳକ୍ଷେପଣ କର ନାହିଁ ।

ଯୀବକ ପୁନର୍ବାର ସେହି ସ୍ୱତନ୍ତ୍ର ଅଞ୍ଜନ ପ୍ରୟୋଗ କରିବାରୁ ଚକ୍ଷୁଟି ସ୍ଥାନଚ୍ୟୁତ ହେଲା । ଏଥର ଯନ୍ତ୍ରଣା ତୀବ୍ରତର ହେଲା ।

ଯୀବକ କହିଲେ, ଏବେ ମଧ୍ୟ ସମୟ ଅଛି ମହାରାଜ ! ଆପଣ ଚାହିଁଲେ ମୁଁ ଆପଣଙ୍କ ଚକ୍ଷୁକୁ ଯଥାସ୍ଥାନରେ ଅବସ୍ଥାପନ କରି ଦେଇ ପାରିବି ।

ନା ନା, କାଳକ୍ଷୟ କର ନାହିଁ । ରାଜା ଆଦେଶ ଦେଲେ ।

ଯୀବକ ତୃତୀୟ ଥର ପାଇଁ ସେହି ସ୍ୱତନ୍ତ୍ର ଔଷଧ ପ୍ରୟୋଗ କରିବାରୁ, ଚକ୍ଷୁଟି କୋଟର ଭିତରୁ ସଂପୂର୍ଣ୍ଣରୂପେ ସ୍ଥାନଚ୍ୟୁତ ହୋଇ ପଦାକୁ ବାହାରି ଆସିଲା । କେବଳ ଚକ୍ଷୁର ଶେଷ ତନ୍ତୁଟି ସଂଯୋଗକାରୀ ଅଂଶରୂପେ ଲାଗି ରହିଲା । ଯୀବକ ଇତ୍ୟବସରରେ ପୁନର୍ବାର କହିଲେ, ଏବେ ମଧ୍ୟ ସମୟ ଅଛି ମହାରାଜ । ଆପଣ ଚାହିଁଲେ ଆପଣଙ୍କ ଚକ୍ଷୁକୁ ଯଥାସ୍ଥାନରେ ଅବସ୍ଥାପିତ କରିପାରିବି ।

ଏଥର ଯନ୍ତ୍ରଣା ତୀବ୍ରତମ ହେଲା । ରାଜପରିଚ୍ଛଦ ରକ୍ତଧାରାରେ ସିକ୍ତ ହେଲା । ଅନ୍ତଃପୁର ରମଣୀ ଓ ପାରିଷଦବର୍ଗ ରାଜାଙ୍କର ପଦତଳେ ଲୋଟିଯାଇ ନିବେଦନ କଲେ, ଆପଣ ଚକ୍ଷୁଦାନରୁ ନିବୃତ୍ତ ହୁଅନ୍ତୁ ମହାରାଜ ! ସେଥିରେ ସମସ୍ତଙ୍କର ମଙ୍ଗଳ ହେବ । ଏହାକହି ସେମାନେ ଉଚ୍ଚସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ ।

କିନ୍ତୁ ଶିବି କାହିଁରେ ହେଲେ କର୍ଣ୍ଣପାତ ନ କରି ଯୀବକଙ୍କୁ କହିଲେ, ଆଉ କାଳ ବିଳମ୍ବ କରନା ଯୀବକ । ଶୀଘ୍ର ତୁମ କର୍ତ୍ତବ୍ୟ ସମ୍ପାଦନ କର ।

ଏହାଶୁଣି ଯୀବକ ରାଜାଙ୍କ ଚକ୍ଷୁ କୋଟରରୁ ଝୁଲିବା ଅବସ୍ଥାରେ ଥିବା ଚକ୍ଷୁକୁ ନିଜ ବାମ ହସ୍ତରେ ଧାରଣ କରି, ଡାହାଣ ହସ୍ତରେ ଏକ ତୀକ୍ଷ୍ଣ ଛୁରୀକା ଧାରଣ ପୂର୍ବକ, ଚକ୍ଷୁ ଡୋଳା ସହିତ ଚକ୍ଷୁ କୋଟରକୁ ସଂଯୁକ୍ତ କରୁଥିବା ଅବଶେଷ ସ୍ନାୟୁ-ତନ୍ତୁକୁ ଛେଦନ କଲେ ।

ରାଜା ତାପରେ ବ୍ରାହ୍ମଣଙ୍କୁ ପାଖକୁ ଡାକିଲେ ।

ବ୍ରାହ୍ମଣ ପାଖକୁ ଆସିବାରୁ ରାଜା ନିଜର ଦକ୍ଷିଣ ଚକ୍ଷୁକୁ ନିଜ ହସ୍ତରେ ଧରି, ତାକୁ ନିଜର ବାମ ଚକ୍ଷୁରେ ଚାହିଁ ଚାହିଁ ଆନନ୍ଦମନରେ କହିଲେ, ଏହି ଚର୍ମଚକ୍ଷୁ ବଦଳରେ ମୁଁ ଦିବ୍ୟଚକ୍ଷୁ ଲାଭ କରିଛି । ତାହା ଚର୍ମ ଚକ୍ଷୁ ଅପେକ୍ଷା ଶତ ନୁହେ, ସହସ୍ର ଗୁଣ ମୂଲ୍ୟବାନ ଅଟେ । ଏ ଚକ୍ଷୁ ତୁମେ ଗ୍ରହଣ କର ।

ବ୍ରାହ୍ମଣ ରାଜାଙ୍କ ପ୍ରଦତ୍ତ ଚକ୍ଷୁଟିକୁ ନିଜର ଶୂନ୍ୟ ଚକ୍ଷୁ କୋଟରରେ ପୂରାଇ ଦେଲେ ଓ ଦୃଷ୍ଟିଶକ୍ତି ଲାଭ କଲେ ।

ରାଜା ଶିବି ତାଙ୍କର ବାମ ଚକ୍ଷୁରେ ବ୍ରାହ୍ମଣଙ୍କର ଦୃଷ୍ଟିଶକ୍ତି ଯୁକ୍ତ ଚକ୍ଷୁଟିକୁ ଚାହିଁ ପରମ ଆନନ୍ଦ ଲାଭ କଲେ । ରାଜା କହିଲେ, ଆଃ ମୋର ଚକ୍ଷୁଦାନ ସାର୍ଥକ ହେଲା । ଏହାପରେ ସେ ଆନନ୍ଦରେ ତାଙ୍କର ବାମ ଚକ୍ଷୁଟିକୁ ମଧ୍ୟ ପୂର୍ବପରି ସେହି ବ୍ରାହ୍ମଣଙ୍କୁ ଦାନ କରିଦେଲେ ।

ବ୍ରାହ୍ମଣ ଉଭୟ ଚକ୍ଷୁ ଲାଭ କରି ଦେବଲୋକକୁ ଚାଲିଗଲେ । ଅଳ୍ପ ସମୟ ମଧ୍ୟରେ ଆଉ ଏକ ବିଚିତ୍ର ଘଟଣା ଘଟିଲା ।

ରାଜାଙ୍କ ଚକ୍ଷୁ ଯନ୍ତ୍ରଣା ଚାହୁଁ ଚାହୁଁ ଉଭେଇଗଲା । ନୂତନ ମାଂସ ଉଦ୍ଭବ ହୋଇ, ଚକ୍ଷୁ ଗର୍ତ୍ତଦୁଇଟି ପୂରଣ ହେଲା । କିନ୍ତୁ ତହିଁରେ ଦୃଷ୍ଟିଶକ୍ତି ନଥିଲା ।

ରାଜା ଏହିପରି ଭାବରେ କିଛିଦିନ ରାଜ ପ୍ରାସାଦରେ କଟାଇ ମନେ ମନେ ଭାବିଲେ, ଜଣେ ଅନ୍ଧ ରାଜ ସିଂହାସନମଣ୍ଡନ କରିବା ଭଲ ନୁହେ । ଏହା ଭାବି, ସେ ମନ୍ତ୍ରୀମାନଙ୍କ ହସ୍ତରେ ରାଜ୍ୟ ପରିଚାଳନା ଦାୟିତ୍ୱ ଅର୍ପଣ କରି, ନିଜେ ସନ୍ନ୍ୟାସ ଜୀବନ ଯାପନ କରିବା ନିମନ୍ତେ ସିଦ୍ଧାନ୍ତ ଗ୍ରହଣ କଲେ । ସେ ତାଙ୍କ ମନ୍ତ୍ରୀମାନଙ୍କୁ ପାଖକୁ ଡାକି ନିଜର ସିଦ୍ଧାନ୍ତ କଥା ପ୍ରକାଶ କଲେ ଓ ସଙ୍ଗରେ ତାଙ୍କୁ ସାହାଯ୍ୟ କରିବା ସକାଶେ ଜଣେ ମାତ୍ର ପରିଚାରକ ନେବାକୁ ଇଚ୍ଛା ପ୍ରକଟ କଲେ । ଏହାପରେ ରଥ-ଚାଳକକୁ ରଥ ପ୍ରସ୍ତୁତ କରିବା ସକାଶେ ଆଦେଶ ଦେଲେ ।

ଏହା ଶୁଣି ମନ୍ତ୍ରୀମାନେ ତାଙ୍କୁ ନଗର ଛାଡ଼ି ନ ଯିବାକୁ ଅନୁରୋଧ କଲେ । କିନ୍ତୁ ରାଜା ଶିବି ନିଜ ଇଚ୍ଛାରେ ଅଟଳ ରହୁଥିବା ଦେଖି, ତାଙ୍କୁ ରଥରେ ନ ଛାଡ଼ି ସୁବର୍ଣ୍ଣ ସବାରି ପ୍ରସ୍ତୁତ କଲେ ଏବଂ ସମସ୍ତେ ମିଶି ତାଙ୍କୁ ଜଳାଶୟ ନିକଟସ୍ଥ ଏକ ଉଦ୍ୟାନ ଆଶ୍ରମକୁ ନେଇ ଛାଡ଼ିଦେଲେ ।

ଶିବି ରାଜାଙ୍କର ଏତାଦୃଶ ସ୍ୱାର୍ଥତ୍ୟାଗରେ, ସ୍ୱର୍ଗଲୋକର ଇନ୍ଦ୍ରଙ୍କ ସିଂହାସନ ଟଳମଳ ହେଲା । ସେ ଧ୍ୟାନମଗ୍ନ ହୋଇ ସମସ୍ତ କାରଣ ଜାଣିପାରିଲେ । ସେ ଦେବଲୋକ ଛାଡ଼ି ରାଜା ଅବସ୍ଥାନ

କରୁଥିବା ଉଦ୍ୟାନ କୁଟୀରକୁ ଓହ୍ଲାଇ ଆସିଲେ ଓ ମନସ୍ଥ କଲେ ଯେ ଶିବିରାଜାଙ୍କର ଚକ୍ଷୁଦାନ କରିବା ସଙ୍ଗେ ସଙ୍ଗେ, ତାଙ୍କୁ ଗୋଟିଏ ବର ପ୍ରଦାନ କରିବେ ।

କୁଟୀରରେ ଇନ୍ଦ୍ରଙ୍କର ପଦଶବ୍ଦ ଶୁଣି ଶିବି ପ୍ରଶ୍ନ କଲେ, ଆପଣ କିଏ ଆସିଛନ୍ତି ?

ମୁଁ ଦେବଲୋକର ଇନ୍ଦ୍ର । ଆପଣଙ୍କୁ ବର ପ୍ରଦାନ କରିବାକୁ ଆସିଛି । ଯେଉଁ ବର ମାଗିବେ ପ୍ରଦାନ କରିବି—ଇନ୍ଦ୍ର କହିଲେ ।

ଶିବି ଏହା ଶୁଣି କହିଲେ, ଧନ ସମ୍ପଦ, ରାଜ୍ୟ ସବୁକିଛି ପରିତ୍ୟାଗ କରିଛି । ମୁଁ ଅନ୍ଧ ଅଟେ । ତେଣୁ ମୃତ୍ୟୁ କାମନା କରୁଛି ।

ଇନ୍ଦ୍ର ପ୍ରଶ୍ନ କଲେ, ପ୍ରକୃତରେ ତୁମେ ମୃତ୍ୟୁ କାମନା କରୁଛ, ନା ଅନ୍ଧହେତୁ ମୃତ୍ୟୁ ଚାହୁଁଛ ?

ମୁଁ ଅନ୍ଧ ହେତୁ ମୃତ୍ୟୁ କାମନା କରୁଛି । ଶିବି ଉତ୍ତର ଦେଲେ ।

ଇନ୍ଦ୍ର କହିଲେ, ପୃଥିବୀରେ ପ୍ରତିଟି କାର୍ଯ୍ୟର କାରଣ ଅଛି । ପ୍ରତି କାର୍ଯ୍ୟ ମୂଳରେ ଉଦ୍ଦେଶ୍ୟ ଅଛି । ତୁମକୁ ଗୋଟିଏ ଚକ୍ଷୁ ମାଗିବା ସ୍ଥଳେ, ତୁମେ ଦୁଇଟି ଚକ୍ଷୁ ଦାନ କଲ । ଏହାର ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କଲେ, ତୁମର ଦୃଷ୍ଟିଶକ୍ତି ଫେରି ପାଇବ ।

ଆପଣ ଗୋଟିଏ ଚକ୍ଷୁ ନେବାକୁ ଚାହୁଁଥିଲେ, ଚକ୍ଷୁଦାନର ଉଦ୍ଦେଶ୍ୟ ସଂପର୍କରେ ପ୍ରଶ୍ନ ନ ପଚାରି, ମୋରି ଦାନର ପ୍ରକୃତରୂପେ ତାହା ଦାନ କରନ୍ତୁ । କାରଣ ମୁଁ କୌଣସି ଉଦ୍ଦେଶ୍ୟ ନ ରଖି ମୋ' ଚକ୍ଷୁ ଦାନ କରିଥିଲି । ଶିବି କହିଲେ ।

ଏହାପରେ ଶିବିଙ୍କର ଗୋଟିଏ ଚକ୍ଷୁର ଦୃଷ୍ଟିଶକ୍ତି ଫେରି ଆସିଲା ।

ଶିବି ପୁଣି ପ୍ରକାଶ କଲେ, ବ୍ରାହ୍ମଣ ମୋ' ପାଖରୁ ଗୋଟିଏ ମାତ୍ର ଚକ୍ଷୁ ଚାହିଁଥିଲେ । କିନ୍ତୁ ପରମ ଆନନ୍ଦ ସହକାରେ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କୁ ମୋର ଦୁଇଟିଯାକ ଚକ୍ଷୁ ଦାନ କରିଥିଲି । ଏହା ଯଦି ସତ୍ୟ ହୋଇଥାଏ, ତାହା ହେଲେ ମୁଁ ଅନ୍ୟ ଚକ୍ଷୁଟିର ମଧ୍ୟ ଦୃଷ୍ଟିଶକ୍ତି ଫେରି ପାଇବି ।

ଶିବି ଏପରି ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ତାଙ୍କର ଦ୍ୱିତୀୟ ଚକ୍ଷୁର ଦୃଷ୍ଟିଶକ୍ତି ଫେରି ପାଇଲେ । ସେ ନିଜର ଚର୍ମଚକ୍ଷୁ ପରିବର୍ତ୍ତେ ଦିବ୍ୟଚକ୍ଷୁ ଲାଭ କଲେ ।

ଦେବରାଜ ଇନ୍ଦ୍ର କହିଲେ, ହେ ରାଜା ! ଆପଣ ଦିବ୍ୟଚକ୍ଷୁ ଲାଭ କରିଅଛନ୍ତି । ଏହାଦ୍ୱାରା ଆପଣଙ୍କ ଦୃଷ୍ଟି, ଚର୍ମଚକ୍ଷୁପରି ସୀମିତ ନ

ରହି ; ସହସ୍ର ଯୋଜନକୁ ବ୍ୟାପ୍ତ ହେବ । ବଣ, ପାହାଡ଼, ପର୍ବତ ଆପଣଙ୍କ ଦୃଷ୍ଟିଶକ୍ତି ଉପରେ ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ । ଏହାକହି ଇନ୍ଦ୍ର ସ୍ୱର୍ଗଲୋକକୁ ଯାତ୍ରା କଲେ ।

ରାଜା ଶିବି ଦୃଷ୍ଟିଶକ୍ତି ଲାଭ କରିବା ପରେ ଆତ୍ମୀୟ ପରିଜନମାନଙ୍କ ସଙ୍ଗେ ରାଜପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ ।

ରାଜା ଦୃଷ୍ଟିଶକ୍ତି ଫେରିପାଇଥିବା ସମ୍ବାଦ ବିଜୁଳି ବେଗରେ ରାଜ୍ୟସାରା ବ୍ୟାପିଗଲା । ପ୍ରଜାବର୍ଗଙ୍କ ମଧ୍ୟରେ ଆନନ୍ଦ ଲହରୀ ଖେଳିଗଲା । ସେମାନେ ଦୃଷ୍ଟିଶକ୍ତି ଫେରି ପାଇଥିବା ନିଜର ପ୍ରିୟ ରାଜାଙ୍କ ଦର୍ଶନ ଇଚ୍ଛାରେ ନାନାପ୍ରକାର ଉପହାର ସାମଗ୍ରୀ ନେଇ ରାଜଧାନୀରେ ପ୍ରବେଶ ହେଲେ ।

ରାଜା ସମସ୍ତଙ୍କୁ ଦର୍ଶନ ଦେବାକୁ ନଗରର ଦ୍ୱାରଦେଶରେ ଗୋଟିଏ ରଙ୍ଗମଞ୍ଚ ନିର୍ମାଣ କରାଇଲେ । ରଂଗମଞ୍ଚର ରାଜ-ସିଂହାସନରେ ଆରୋହଣ କରି ଘୋଷଣା କଲେ, ଦାନର ମହତ୍ତ୍ୱ ତୁମ୍ଭେମାନେ ଦେଖିଲ । ମୁଁ ଚର୍ମଚକ୍ଷୁ ଦାନ କରି, ଦିବ୍ୟଚକ୍ଷୁର ଅଧିକାରୀ ହେଲି । ତେଣୁ ଭୋଜନ ପୂର୍ବରୁ କିଛି କିଛି ଦାନ କରିବ । ଯଦି କେହି ତୁମର ଦ୍ୱାରସ୍ଥ ହୋଇ କିଛି ମାଗେ, ତାକୁ 'ନାହିଁ' ବୋଲି କହିବ ନାହିଁ ।

ପୁଣି ରାଜା ଶିବି ପ୍ରକାଶ କଲେ, ମର୍ତ୍ତ୍ୟଲୋକରେ ମୃତ୍ୟୁଶୀଳ ମାନବମାନଙ୍କ ପକ୍ଷରେ ଆତ୍ମତ୍ୟାଗ ହିଁ ଶ୍ରେଷ୍ଠ ତ୍ୟାଗ । ସନ୍ତୋଷରେ ଦାନ କରିବା ଦ୍ୱାରା ସ୍ୱର୍ଗପଥ ସୁଗମ ହୋଇଥାଏ ।

ରାଜା ପ୍ରତି ପୂର୍ଣ୍ଣିମା ଓ ଅମାବାସ୍ୟା ଦିନ ପ୍ରଜାମାନଙ୍କୁ ସମବେତ କରି ଏହିପରି ଉପଦେଶ ଦେଉଥିଲେ, ପ୍ରଜାବର୍ଗ ରାଜାଙ୍କ କଥା ମାନି ଚଳିଲେ ଓ ଦାନ ପୁଣ୍ୟ କାର୍ଯ୍ୟରେ ବ୍ରତୀ ହେଲେ । ଏହାଦ୍ୱାରା ସମସ୍ତଙ୍କର ସ୍ୱର୍ଗପ୍ରାପ୍ତି ପଥ ସୁଗମ ହେଲା ।

